# ଆତ୍ମସାକ୍ଷାତ୍କାର

## ପ୍ରାପ୍ତି ନିମନ୍ତେ ସରଳ ଏବଂ ସଠିକ୍ ବିଜ୍ଞାନ

Oriya

ଜ୍ଞାନୀପୁରୁଷ ଦାଦାଶ୍ରୀ (ଦାଦା ଭଗବାନ)

**ଜ୍ଞାନୀପୁରୁଷ ଦାଦା ଭଗବାନଙ୍କ ଦିବ୍ୟ ଜ୍ଞାନବାଣୀ**

ସଙ୍କଳନ : ପୂଜ୍ୟଶ୍ରୀ ଦୀପକଭାଇ ଦେଶାଇ

# ଆତ୍ମସାକ୍ଷାତ୍କାର

## ପ୍ରାପ୍ତ କରିବାର ସରଳ ଏବଂ ସଠିକ୍ ବିଜ୍ଞାନ

**ପ୍ରକାଶକ : ଶ୍ରୀ ଅଜିତ୍ ସି. ପଟେଲ,** ଦାଦା ଭଗବାନ ଆରାଧନା ଟ୍ରଷ୍ଟ, ୫, ମମତା ପାର୍କ ସୋସାଇଟୀ, ଉସ୍ମାନପୁରା, ଅହମଦାବାଦ୍-୩୮୦୦୧୪, ଗୁଜୁରାଟ, **ଫୋନ୍ :** (୦୭୯) ୩୯୮୩୦୧୦୦



**ପ୍ରଥମ ସଂସ୍କରଣ : ବହି ସଂଖ୍ୟା ୨୦୦୦ ଅଗଷ୍ଟ ୨୦୧୪**

**ଦ୍ୱିତୀୟ ସଂସ୍କରଣ : ବହି ସଂଖ୍ୟା ୨୦୦୦ ନଭେମ୍ବର ୨୦୧୬**

**ଭାବ ମୂଲ୍ୟ :** 'ପରମ ବିନୟ' ଏବଂ 'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

**ମୁଦ୍ରକ :** ଅମ୍ବା ଓଫ୍‌ସେଟ୍, ପାର୍ଶ୍ୱନାଥ ଚାମ୍ବର୍ସ, ଉସ୍ମାନ୍‌ପୁରା, ଅହମଦାବାଦ୍

# 'ଦାଦା ଭଗବାନ' କିଏ ?

ଜୁନ୍ ୧୯୫୮ରେ ଏକ ସନ୍ଧ୍ୟାର ପାଖାପାଖି ଛଅଟା ସମୟ, ଭିଡ଼ରେ ଭରି ହୋଇଥିବା ସୁରତ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ୍ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୂପରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର 'ଦାଦା ଭଗବାନ' ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । 'ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ'ଣ ? ମୁକ୍ତି କ'ଣ ?' ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସଂପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଳ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ'ର ପାଟୀଦାର, କଂଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

'ବ୍ୟାପାରରେ ଧର୍ମ ରହିବା ଉଚିତ, ଧର୍ମରେ ବ୍ୟାପାର ନୁହେଁ', ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନ ପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ ବିନା କ୍ରମରେ ଏବଂ କ୍ରମ ଅର୍ଥାତ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ 'ଦାଦା ଭଗବାନ କିଏ ?'ର ରହସ୍ୟ ଜଣାଇବାକୁ ଯାଇ କହୁଥିଲେ ଯେ, ''ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ 'ଏ.ଏମ୍. ପଟେଲ୍' ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ 'ଦାଦା ଭଗବାନ' ଅଟନ୍ତି । ଦାଦା ଭଗବାନ ତ' ଚଉଦ ଲୋକର ନାଥ ଅଟନ୍ତି । ସେ ଆପଣଙ୍କ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ଆପଣଙ୍କ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ 'ଏଠାରେ' ମୋ ଭିତରେ ସଂପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।''

## ଅକ୍ରମ ବିଜ୍ଞାନ

# ଆତ୍ମସାକ୍ଷାତ୍କାର

## ପ୍ରାପ୍ତି ନିମନ୍ତେ ସରଳ ଓ ସଠିକ୍ ବିଜ୍ଞାନ

## ୧. ମନୁଷ୍ୟ ଜୀବନର ଧ୍ୟେୟ କ'ଣ ?

ଏହି ଜୀବନ ସମ୍ପୂର୍ଣ୍ଣ ଫ୍ରାକ୍‌ଚର(ବ୍ୟର୍ଥ) ହୋଇଯାଇଛି । କାହିଁକି ବଞ୍ଚିଛେ ତାହାର ମଧ୍ୟ ହୋସ ନାହିଁ । ଏହି ବିନା ଧ୍ୟେୟର ଜୀବନ, ଏହାର କୌଣସି ଅର୍ଥ ହିଁ ନାହିଁ । ଲକ୍ଷ୍ମୀ ଆସୁଛି, ଏଣୁ ଖାଇପିଇ ମଜା ଲୁଟୁଛନ୍ତି ଏବଂ ଦିନସାରା ୱରିଜ୍(ଚିନ୍ତା) କରିବାରେ ଲାଗିଛନ୍ତି । ଏହାକୁ ଜୀବନର ଧ୍ୟେୟ କିପରି କୁହାଯିବ ? ମନୁଷ୍ୟପଣ ଏପରି ବୃଥାରେ ନଷ୍ଟ କରିଦେବା, ଏହାର ମାନେ କ'ଣ ? ତା'ହେଲେ ମନୁଷ୍ୟପଣ ପ୍ରାପ୍ତ ହେବା ପରେ ନିଜର ଧ୍ୟେୟ ପର୍ଯ୍ୟନ୍ତ ପହଞ୍ଚିବାପାଇଁ କ'ଣ କରିବା ଉଚିତ ? ଯଦି ସାଂସାରିକ ସୁଖ ଅର୍ଥାତ ଭୌତିକ ସୁଖ ଚାହୁଁଛ, ତେବେ ନିଜ ପାଖରେ ଯାହା କିଛି ବି ଅଛି ତାକୁ ଅନ୍ୟମାନଙ୍କ ମଧ୍ୟରେ ବାଣ୍ଟ ।

ଏହି ଦୁନିଆର ନିୟମ ଗୋଟିଏ ବାକ୍ୟରେ ବୁଝିନିଅ, ଏହି ଜଗତର ସବୁ ଧର୍ମର ସାର ଏହା ଯେ, 'ଯଦି ମନୁଷ୍ୟ, ସୁଖ ଚାହୁଁଛି ତେବେ ଜୀବ ମାତ୍ରକୁ ସୁଖ ଦିଅ ଓ ଯଦି ଦୁଃଖ ଚାହୁଁଛ ତେବେ ଦୁଃଖ ଦିଅ ।' ଯାହା ଅନୁକୂଳ ଲାଗୁଛି ତାହା ଦିଅ । ଏବେ ଯଦି କେହି କୁହେ ଆମେ ଅନ୍ୟକୁ ସୁଖ କିପରି ଦେବୁ, ଆମ ପାଖରେ ଟଙ୍କା ନାହିଁ । ତେବେ କେବଳ ଟଙ୍କା ପଇସା ଦ୍ୱାରା ଯେ ସୁଖ ଦିଆଯାଇପାରେ ଏପରି କିଛି ନୁହେଁ, ତାଙ୍କ ପ୍ରତି ଓବ୍‌ଲାଇଜିଙ୍ଗ୍ ନେଚର୍(ଉପକାରୀ ସ୍ୱଭାବ) ରଖାଯାଇପାରେ, ତାଙ୍କୁ ସହାୟତା କରାଯାଇପାରେ, ଯେପରି କିଛି ଆଣିବାର ଅଛି ତେବେ ତାଙ୍କ ପାଇଁ ଆଣିଦିଅ ଅଥବା ପରାମର୍ଶ ଦେଇପାର, ଅନେକ ରାସ୍ତା ଅଛି ଉପକାର କରିବା ପାଇଁ ।

### ଦୁଇ ପ୍ରକାରର ଧ୍ୟେୟ, ସାଂସାରିକ ଏବଂ ଆତ୍ୟନ୍ତିକ

ଦୁଇ ପ୍ରକାରର ଧ୍ୟେୟ ସ୍ଥିର କରିବା ଦରକାର ଯେ ଆମେ ସଂସାରରେ ଏପରି ରହିବା, ଏପରି ବଞ୍ଚିବା ଯେପରି କାହାରିକୁ କଷ୍ଟ ନହେଉ, କାହାପାଇଁ ଦୁଃଖଦାୟୀ ନହେଉ । ଏହିପରି ଆମେ ଉତ୍ତମ, ଉଚ୍ଚ ସତ୍‌ସଙ୍ଗୀପୁରୁଷ, ସତ୍‌ପୁରୁଷଙ୍କ

ସଙ୍ଗେ ରହିବା ଏବଂ କୁସଙ୍ଗରେ ପଡ଼ିବା ନାହିଁ, ଏପରି କିଛି ଧ୍ୟେୟ ହେବା ଦରକାର । ଏବଂ ଦ୍ୱିତୀୟ ଧ୍ୟେୟରେ ତ' ପ୍ରତ୍ୟକ୍ଷ ଜ୍ଞାନୀପୁରୁଷ ମିଳିଗଲେ (ତାଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି) ତାଙ୍କ ସତ୍‌ସଙ୍ଗରେ ରହିବା ଉଚିତ । ଏହା ଦ୍ୱାରା ତ' ତୁମର ପ୍ରତ୍ୟେକ କାମ ହୋଇଯିବ, ସମସ୍ତ ପଜ୍‌ଲ୍(ଦ୍ୱନ୍ଦ)ର ସମାଧାନ ହୋଇଯିବ (ଏବଂ ମୋକ୍ଷ ପ୍ରାପ୍ତ ହେବ) ।

ଏଣୁ ମନୁଷ୍ୟର ଅନ୍ତିମ ଧ୍ୟେୟ କ'ଣ ? ମୋକ୍ଷରେ ଯିବାର ଅଛି, ଏହି ଧ୍ୟେୟ ହେବା ଉଚିତ । ତୁମକୁ ମଧ୍ୟ ମୋକ୍ଷରେ ଯିବାର ଅଛି ନା ? କେବେ ପର୍ଯ୍ୟନ୍ତ ଭଟକୁଥିବ ? ଅନନ୍ତ ଜନ୍ମରୁ ଭଟକି-ଭଟକି... ଭଟକିବାରେ ଆଉ କିଛି ବାକି ରଖି ନାହଁ ନା ! କାହିଁକି ଭଟକିବାକୁ ପଡ଼ିଲା ? କାରଣ 'ମୁଁ କିଏ' ତାହା ଜାଣିଲ ନାହିଁ । ନିଜ ସ୍ୱରୂପକୁ ହିଁ ଜାଣିଲ ନାହିଁ । ନିଜର ସ୍ୱରୂପକୁ ଜାଣିବା ଉଚିତ୍ । 'ସ୍ୱୟଂ କିଏ' ତାହା ଜାଣିବା ଉଚିତ୍ ନୁହେଁ ? ଏତେ ଭଟକିବା ସତ୍ତ୍ୱେ ମଧ୍ୟ ତୁମେ ଜାଣି ପାରିଲ ନାହିଁ ? କେବଳ ଟଙ୍କା ରୋଜଗାର କରିବାରେ ଲାଗିଛ ? ମୋକ୍ଷ ପାଇଁ ମଧ୍ୟ ଅଳ୍ପ-ବହୁତ କିଛି କରିବାକୁ ପଡ଼ିବ ନା ନାହିଁ ? ମନୁଷ୍ୟ ବାସ୍ତବରେ ପରମାତ୍ମା ହୋଇପାରିବ । ନିଜର ପରମାତ୍ମା ପଦକୁ ପ୍ରାପ୍ତ କରିବା ଏହା ହିଁ ସବୁଠାରୁ ଅନ୍ତିମ ଧ୍ୟେୟ ।

## ମୋକ୍ଷ, ଦୁଇଟି ଷ୍ଟେଜ୍‌ରେ

**ପ୍ରଶ୍ନକର୍ତ୍ତା :** ମୋକ୍ଷର ଅର୍ଥ ସାଧାରଣତଃ ଆମେ ଜନ୍ମ-ମୃତ୍ୟୁରୁ ମୁକ୍ତି ହିଁ ବୁଝିଥାଉ ।

**ଦାଦାଶ୍ରୀ :** ହଁ, ତାହା ଠିକ୍, କିନ୍ତୁ ତାହା ଅନ୍ତିମ ମୁକ୍ତି ଅଟେ, ସେକେଣ୍ଡାରୀ ଷ୍ଟେଜ୍ ଅଟେ । କିନ୍ତୁ ପ୍ରଥମ ଷ୍ଟେଜ୍‌ରେ ପ୍ରାଥମିକ ମୋକ୍ଷ ଅର୍ଥାତ ସଂସାରି ଦୁଃଖର ଅଭାବ ବର୍ତ୍ତେ । ସଂସାରର ଦୁଃଖରେ ମଧ୍ୟ ଦୁଃଖ ସ୍ପର୍ଶ କରେ ନାହିଁ, ଉପାଧିରେ ମଧ୍ୟ ସମାଧି ରୁହେ-ଏହା ହିଁ ପ୍ରଥମ ମୋକ୍ଷ, ଆଉ ପୁଣି ଯେବେ ଏ ଦେହ ଛୁଟିଯାଏ ସେତେବେଳେ ଆତ୍ୟନ୍ତିକ ମୋକ୍ଷ ହେବ କିନ୍ତୁ ପ୍ରାଥମିକ ମୋକ୍ଷ ଏହିଠାରେ ହେବା ଉଚିତ୍ । ମୋର ମୋକ୍ଷ ହୋଇସାରିଛି ନା ! ସଂସାରରେ ରହି ମଧ୍ୟ ସଂସାର ସ୍ପର୍ଶ କରିବ ନାହିଁ, ଏଭଳି ମୋକ୍ଷ ହୋଇଯିବା ଦରକାର । ତାହା ଏହି ଅକ୍ରମ ବିଜ୍ଞାନ ଦ୍ୱାରା ହୋଇପାରିବ ।

# ୨. ଆତ୍ମଜ୍ଞାନ ଦ୍ୱାରା ଶାଶ୍ୱତ ସୁଖର ପ୍ରାପ୍ତି

ଜୀବମାତ୍ର କ'ଣ ଖୋଜି ଥାଏ ? ଆନନ୍ଦ ଖୋଜିଥାଏ, କିନ୍ତୁ ମୁହୂର୍ତ୍ତକ ପାଇଁ ମଧ୍ୟ ସୁଖ ମିଳି ନଥାଏ । ବିବାହ ଉତ୍ସବରେ ଯାଆନ୍ତି ଅବା ନାଟକ ଦେଖିବା ପାଇଁ ଯାଆନ୍ତି, କିନ୍ତୁ ପରେ ପୁଣି ଦୁଃଖ ଆସିଯାଏ । ଯେଉଁ ସୁଖ ପରେ ଦୁଃଖ ଆସେ ତାହାକୁ ସୁଖ କିପରି କହିବା ? ତାହା ତ' କେବଳ ମୂର୍ଚ୍ଛାର ଆନନ୍ଦ କୁହାଯାଏ । ସୁଖ ତ' ପରମାନେଣ୍ଟ(ସ୍ଥାୟୀ) ହୋଇଥାଏ । ଏହା ତ' ଟେମ୍ପରାରୀ(କ୍ଷଣସ୍ଥାୟୀ) ସୁଖ ଓଲଟା ପୁଣି କଳ୍ପିତ ଅଟେ, ଆମେ ମାନିନେଇଛୁ । ପ୍ରତ୍ୟେକ ଆତ୍ମା କ'ଣ ଖୋଜେ ? ଚିରଦିନ ପାଇଁ ସୁଖ... ଶାଶ୍ୱତ ସୁଖ ଖୋଜେ । ତାହା 'ଏଇଠୁ ମିଳିବ, ସେଇଠୁ ମିଳିବ । ଏହା ନେଇଯିବି, ଏପରି କରିବି, ବଙ୍ଗଳା ବନେଇବି ତେବେ ସୁଖ ଆସିବ, ଗାଡ଼ି କିଣିବି ତେବେ ସୁଖ ମିଳିବ', ଏମିତି କରିଚାଲିଥାଏ । କିନ୍ତୁ କିଛି ମଧ୍ୟ ମିଳେନାହିଁ, ବରଂ ଆହୁରି ଅଧିକ ଜଞ୍ଜାଳରେ ଫସିଯାଏ । ସୁଖ ନିଜ ଭିତରେ ହିଁ ଅଛି, ଆତ୍ମାରେ ହିଁ ଅଛି । ଏଣୁ ଯେତେବେଳେ ଆତ୍ମା ପ୍ରାପ୍ତ କରେ ସେତେବେଳେ ସନାତନ ସୁଖ ପ୍ରାପ୍ତ ହୁଏ ।

## ସୁଖ ଓ ଦୁଃଖ

ଜଗତରେ ସମସ୍ତେ ସୁଖ ହିଁ ଖୋଜିଥାନ୍ତି କିନ୍ତୁ ସୁଖର ପରିଭାଷା ହିଁ ସ୍ଥିର କରନ୍ତି ନାହିଁ । 'ସୁଖ ଏପରି ହେବା ଉଚିତ୍ କି ଯାହା ପରେ ଆଉ ଦୁଃଖ କେବେ ବି ନ ଆସିବ' । ଯଦି ଏପରି ଗୋଟିଏ ମଧ୍ୟ ସୁଖ ଦୁନିଆରେ ଥାଏ, ତା'ହେଲେ ଖୋଜି ବାହାର କର । ଶାଶ୍ୱତ ସୁଖ ତ' ନିଜର 'ସ୍ୱ' ରେ ହିଁ ଅଛି । ନିଜେ ଅନନ୍ତ ସୁଖର ଧାମ ଅଟେ ଏବଂ ଲୋକେ ବିନାଶୀ ବସ୍ତୁରେ ସୁଖ ଖୋଜିବାରେ ଲାଗିଛନ୍ତି ।

## ସନାତନ ସୁଖର ସନ୍ଧାନ

ଯାହାକୁ ସନାତନ ସୁଖ ପ୍ରାପ୍ତ ହୋଇଗଲା, ତା'କୁ ଯଦି ସଂସାରର ସୁଖ-ଦୁଃଖ ସ୍ପର୍ଶ ନ କରେ ତେବେ ସେହି ଆତ୍ମାର ମୁକ୍ତି ହୋଇଗଲା । ସନାତନ ସୁଖ ହିଁ ମୋକ୍ଷ ଅଟେ । ଅନ୍ୟ କୌଣସି ମୋକ୍ଷରେ ଆମର ବା କି ପ୍ରୟୋଜନ ? ଆମକୁ ସୁଖ ଦରକାର । ତୁମକୁ ସୁଖ ଭଲ ଲାଗେ କି ନାହିଁ କୁହ ।

**ପ୍ରଶ୍ନକର୍ତ୍ତା :** ସେଇଥିପାଇଁ ତ' ଭଟକୁଛନ୍ତି ସମସ୍ତେ ।

**ଦାଦାଶ୍ରୀ :** ହଁ, କିନ୍ତୁ ସୁଖ ଟେମ୍ପରାରୀ ନହେବା ଉଚିତ୍ । ଟେମ୍ପରାରୀ ଭଲ ଲାଗେ ନାହିଁ । ସେହି ସୁଖ ପରେ ଦୁଃଖ ଆସିଥାଏ, ସେଥିପାଇଁ ତାହା ଭଲ ଲାଗେ ନାହିଁ । ଯଦି ସନାତନ ସୁଖ ମିଳିବ, ତେବେ ଦୁଃଖ ଆସିବ ହିଁ ନାହିଁ । ଏହିପରି ସୁଖ ଦରକାର । ଯଦି ସେମିତି ସୁଖ ମିଳେ ତେବେ ତାହା ହିଁ ମୋକ୍ଷ । ମୋକ୍ଷର ଅର୍ଥ କ'ଣ ? 'ସଂସାରୀ ଦୁଃଖର ଅଭାବ' ହିଁ ମୋକ୍ଷ ! ଅନ୍ୟଥା ଦୁଃଖର ଅଭାବ ତ' କାହାରିକୁ ରହେ ନାହିଁ !

ଗୋଟିଏ ହେଉଛି ବାହ୍ୟବିଜ୍ଞାନ ଯାହାର ଅଭ୍ୟାସ ଏ ଦୁନିଆର ସାଇଣ୍ଟିଷ୍ଟମାନେ କରିଚାଲିଛନ୍ତି । ଅନ୍ୟଟି ହେଉଛି ଅନ୍ତର୍ବିଜ୍ଞାନ, ଯାହା ନିଜକୁ ସନାତନ ସୁଖ ଆଡ଼କୁ ନେଇଯାଏ । ମାନେ, ନିଜକୁ ସନାତନ ସୁଖର ପ୍ରାପ୍ତି କରାଏ ତାହାକୁ ଆତ୍ମବିଜ୍ଞାନ କୁହାଯାଏ ଏବଂ ଏ ଟେମ୍ପରାରୀ ଏଡ଼ଜଷ୍ଟମେଣ୍ଟବାଲା ସୁଖ ଦିଏ, ତାହାକୁ ସବୁ ବାହ୍ୟବିଜ୍ଞାନ କୁହାଯାଏ । ବାହ୍ୟ ବିଜ୍ଞାନ ଶେଷରେ ବିନାଶୀ ଅଟେ ଏବଂ ବିନାଶକାରୀ ମଧ୍ୟ । ଆଉ ଏହି ଅକ୍ରମ ବିଜ୍ଞାନ ସନାତନ ଅଟେ ଏବଂ ସନାତନକାରୀ ମଧ୍ୟ ।

## 3. I and MY are separate

### 'ଜ୍ଞାନୀ' ହିଁ ମୌଳିକ ସ୍ପଷ୍ଟୀକରଣ ଦିଅନ୍ତି

'I' ଭଗବାନ ଅଟେ ଓ 'My' ମାୟା ଅଟେ । 'My' ତାହା ମାୟା ଅଟେ । 'My is relative to 'I'.'I' is real . ଆତ୍ମାର ଗୁଣସମୂହକୁ 'I'ରେ ଆରୋପଣ କଲେ, ତୁମର ଶକ୍ତି ବହୁତ ବଢ଼ିଯିବ । ମୂଳ ଆତ୍ମା, ଆତ୍ମଜ୍ଞାନୀ ବିନା ମିଳି ପାରିବ ନାହିଁ । କିନ୍ତୁ 'I' ଓ 'my' ସମ୍ପୂର୍ଣ୍ଣ ଅଲଗା ଅଟନ୍ତି । ଏହା ସମସ୍ତଙ୍କୁ, ଏପରିକି ଫରେନର୍(ବିଦେଶୀମାନେ) ଯଦି ବୁଝିନେବେ ତାଙ୍କର ମଧ୍ୟ ଅନେକ ସମସ୍ୟା କମ୍ ହୋଇଯିବ । ଏହା ସାଇନ୍ସ(ବିଜ୍ଞାନ) ଅଟେ । ଅକ୍ରମ ବିଜ୍ଞାନ, ଏହି ଆଧ୍ୟାତ୍ମିକ Research(ଗବେଷଣା)ର ସମ୍ପୂର୍ଣ୍ଣ ନୂଆ କୌଶଳ । 'I' ହେଉଛି 'ସ୍ୱ' ଭାବ ଏବଂ 'My' ହେଉଛି ମାଲିକୀଭାବ ।

### ସେପାରେଟ୍ 'I' ଏଣ୍ଡ 'MY'

ତୁମକୁ ଯଦି କୁହାଯାଏ ଯେ, Separate 'I' and 'My' with separator('ମୁଁ' ଏବଂ 'ମୋର'କୁ ପୃଥକୀକାରକ ଦ୍ୱାରା ଅଲଗା କର), ତେବେ ତୁମେ 'I' ଓ 'My'କୁ ସେପାରେଟ୍ କରିପାରିବ କି ? 'I' ଓ 'My'କୁ ସେପାରେଟ୍

କରିବା ଦରକାର କି ନାହିଁ? ଦୁନିଆରେ କେବେ ନା କେବେ ତ' ଜାଣିବାକୁ ପଡ଼ିବ ନା ! ସେପାରେଟ୍ 'I' ଏଣ୍ଡ 'My' । ଯେପରି ଦୁଗ୍ଧରୁ ଲହୁଣୀକୁ ସେପାରେଟର ଦ୍ୱାରା ଅଲଗା କରାଯାଏ । ଠିକ୍ ସେହିପରି ଅଲଗା କରିବାକୁ ହେବ ।

ତୁମ ପାଖରେ 'My' ପରି କିଛି ଜିନିଷ ଅଛି କି ? 'I' ଏକା ଅଛି ନା 'My' ସାଥିରେ ଅଛି ?

**ପ୍ରଶ୍ନକର୍ତ୍ତା :** 'My' ସାଥୀରେ ରହିବ ନା !

**ଦାଦାଶ୍ରୀ :** କ'ଣ କ'ଣ 'My' ଅଛି ତୁମ ପାଖରେ ?

**ପ୍ରଶ୍ନକର୍ତ୍ତା :** ମୋ ଘର ଓ ଘରେ ଥିବା ସବୁ ଜିନିଷ ।

**ଦାଦାଶ୍ରୀ :** ସବୁକିଛି ତୁମର କୁହାଯିବ ? ଆଉ ସ୍ତ୍ରୀ କାହାର କୁହାଯିବ ?

**ପ୍ରଶ୍ନକର୍ତ୍ତା :** ସେ ମଧ୍ୟ ମୋର ।

**ଦାଦାଶ୍ରୀ :** ଆଉ ପିଲାମାନେ କାହାର ?

**ପ୍ରଶ୍ନକର୍ତ୍ତା :** ସେମାନେ ମଧ୍ୟ ମୋର ।

**ଦାଦାଶ୍ରୀ :** ଆଉ ଏ ଘଡ଼ି କାହାର ?

**ପ୍ରଶ୍ନକର୍ତ୍ତା :** ଏହା ମଧ୍ୟ ମୋର ।

**ଦାଦାଶ୍ରୀ :** ଆଉ ଏ ହାତ କାହାର ?

**ପ୍ରଶ୍ନକର୍ତ୍ତା :** ହାତ ମଧ୍ୟ ମୋର ଅଟେ ।

**ଦାଦାଶ୍ରୀ :** ପୁଣି ମୋ ମୁଣ୍ଡ, ମୋ ଦେହ,ମୋ ଗୋଡ଼, ମୋ କାନ, ମୋ ଆଖି, ଏପରି କହିବ । ଏହି ଦେହରେ ଥିବା ସବୁଅଙ୍ଗକୁ ମୋର କହୁଛ ତେବେ 'ମୋର' କହିବାବାଲା 'ତୁମେ' କିଏ ? ଏହା କେବେ ଭାବିନାହଁ? ' 'My' ନେମ୍ ଇଜ୍ *ଚନ୍ଦୁଭାଇ' କହିବା, ଆଉ ପୁଣି କହିବା 'ମୁଁ ଚନ୍ଦୁଭାଇ' ଏଥିରେ କିଛି ବିରୋଧାଭାସ ଲାଗୁନାହିଁ?

**ପ୍ରଶ୍ନକର୍ତ୍ତା :** ହଁ, ଲାଗୁଛି ।

**ଦାଦାଶ୍ରୀ :** ତୁମେ ଚନ୍ଦୁଭାଇ ଅଟ, କିନ୍ତୁ ଏଥିରେ 'I' ଏଣ୍ଡ 'My' ଦୁଇ ଜଣ

*ଚନ୍ଦୁଭାଇ ସ୍ଥାନରେ ପାଠକେ ନିଜର ନାମ ବୁଝନ୍ତୁ ।

ଅଛନ୍ତି । ଏହି 'I' ଏଣ୍ଡ 'My' ଦୁଇ ରେଳଧାରଣା ଅଲଗା ଅଟେ, ପାରାଲାଲ୍(ସମାନ୍ତର) ହିଁ ରହିଥାଏ କେବେ ବି ଏକାକାର ହୁଅନ୍ତି ନାହିଁ । ତଥାପି ତୁମେ ଏକାକାର ମାନୁଛ, ଏହାକୁ ବୁଝି ଏଥିରୁ 'My' କୁ ସେପାରେଟ୍ କରିଦିଅ । ତୁମ ଠାରେ ଯେଉଁ 'My' ଅଛି ତାହାକୁ ଗୋଟିଏ ପାର୍ଶ୍ୱରେ ରଖ । 'My' ହାର୍ଟ (ମୋ ହୃଦୟ) ତେବେ ତାକୁ ଗୋଟିଏ ପଟେ ରଖ । ଏହି ଦେହରୁ ଆଉ କ'ଣ କ'ଣ ସେପାରେଟ୍ କରିବାକୁ ହେବ ?

**ପ୍ରଶ୍ନକର୍ତ୍ତା :** ଗୋଡ଼, ଇନ୍ଦ୍ରିୟଗୁଡ଼ିକୁ ।

**ଦାଦାଶ୍ରୀ :** ହଁ, ସବୁକିଛି । ପାଞ୍ଚ ଇନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ ମନ-ବୁଦ୍ଧି-ଚିତ୍ତ-ଅହଂକାର ସବୁକିଛି । ଏବଂ 'My egoism(ମୋର ଅହଂକାର)' କୁହନ୍ତି ନା 'I am egoism(ମୁଁ ଅହଂକାର)' କୁହନ୍ତି ?

**ପ୍ରଶ୍ନକର୍ତ୍ତା :** 'My egoism' ।

**ଦାଦାଶ୍ରୀ :** 'My egoism' କହିବା ତେବେ ତାହାକୁ ଅଲଗା କରିହେବ । କିନ୍ତୁ ଏହାର ଆଗକୁ ଯାହା ଅଛି, ସେଥିରେ ତୁମ ଭାଗ କ'ଣ, ଏହା ତୁମେ ଜାଣ ନାହିଁ । ଏଥିପାଇଁ ସମ୍ପୂର୍ଣ୍ଣରୂପେ ସେପାରେଶନ୍ ହୋଇପାରେ ନାହିଁ । ତୁମେ ନିଜର କିଛି ସୀମା ପର୍ଯ୍ୟନ୍ତ ଜାଣିପାରିବ । ତୁମେ ସ୍ଥୁଳବସ୍ତୁ ହିଁ ଜାଣିଛ, ସୂକ୍ଷ୍ମର ପରିଚୟ ନାହିଁ । ସୂକ୍ଷ୍ମକୁ ଅଲଗା କରିବା, ତା' ପରେ ସୂକ୍ଷ୍ମତରକୁ ଅଲଗା କରିବା, ପୁଣି ସୂକ୍ଷ୍ମତମକୁ ଅଲଗା କରିବା ତ' ଜ୍ଞାନୀପୁରୁଷଙ୍କ କାମ ଅଟେ ।

କିନ୍ତୁ ଗୋଟି-ଗୋଟି କରି ସବୁ ସ୍ପେୟାର ପାର୍ଟ୍ସ କୁ ଅଲଗା କରିଚାଲିଲେ 'I' ଏବଂ 'My' ଦୁହେଁ ଅଲଗା ହୋଇପାରିବେ ନା ? 'I' ଏବଂ 'My' ଦୁହିଁଙ୍କୁ ଅଲଗା କରି କରି ଶେଷରେ କ'ଣ ରହିବ ? 'My' କୁ ଗୋଟିଏ ପାର୍ଶ୍ୱରେ ରଖିଲେ ତେବେ ଶେଷରେ କ'ଣ ରହିବ ?

**ପ୍ରଶ୍ନକର୍ତ୍ତା :** 'I'

**ଦାଦାଶ୍ରୀ :** ସେହି 'I' ହିଁ ତୁମେ ଅଟ ! ବାସ୍ ସେହି 'I' କୁ ହିଁ ରିୟଲାଇଜ୍ (ଅନୁଭବ) କରିବାର ଅଛି ।

ସେଥିପାଇଁ ମୋର ଆବଶ୍ୟକତା ପଡ଼ିବ । ମୁଁ ତୁମଠାରେ ସେ ସବୁ ଅଲଗା କରିଦେବି । ପରେ ତୁମକୁ 'ମୁଁ ଶୁଦ୍ଧାତ୍ମା ଅଟେ' ଏପରି ଅନୁଭବ ରହିବ । ଅନୁଭବ ହେବା ଦରକାର ଓ ତତ୍ ସଙ୍ଗେ ସଙ୍ଗେ ଦିବ୍ୟ ଚକ୍ଷୁ ମଧ୍ୟ ଦିଏ ଯାହାଦ୍ୱାରା 'ଆତ୍ମବତ୍ ସର୍ବଭୂତେଷୁ' ଦେଖାଯାଏ(ସମସ୍ତଙ୍କ ଭିତରେ ଆତ୍ମା) ।

# ୪. 'ମୁଁ' ର ପରିଚୟ କିପରି ?

## ଜପ-ତପ, ବ୍ରତ ଓ ନିୟମ

**ପ୍ରଶ୍ନକର୍ତ୍ତା :** ବ୍ରତ, ତପ, ନିୟମ ଜରୁରୀ ଅଟେ ନା ନାହିଁ ?

**ଦାଦାଶ୍ରୀ :** କଥାଟି ଏପରି ଯେ ଔଷଧ ଦୋକାନରେ ଯେତେ ଔଷଧ ଅଛି ତାହା ସବୁ ଆବଶ୍ୟକ, କିନ୍ତୁ ତାହା ଲୋକଙ୍କ ପାଇଁ ଦରକାର, ତୁମକୁ ଯେତିକି ଔଷଧ ଦରକାର ଠିକ୍ ସେତିକି ବୋତଲ ନେଇଯିବାର ଅଛି । ଠିକ୍ ସେହିପରି ବ୍ରତ, ତପ, ନିୟମ ଏ ସବୁର ଆବଶ୍ୟକତା ଅଛି । ଏହି ଦୁନିଆଁରେ କିଛି ମଧ୍ୟ ଭୁଲ ନୁହେଁ । ଜପ, ତପ କିଛି ଭୁଲ ନୁହେଁ । କିନ୍ତୁ ପ୍ରତ୍ୟେକଙ୍କ ଦୃଷ୍ଟିରେ ସତ୍ୟ, ଅପେକ୍ଷାକୃତ ସତ୍ୟ ଅଟେ ।

**ପ୍ରଶ୍ନକର୍ତ୍ତା :** ତପ ଓ କ୍ରିୟାରୁ ମୁକ୍ତି ମିଳେ କି ?

**ଦାଦାଶ୍ରୀ :** ତପ ଓ କ୍ରିୟାରୁ ଫଳ ମିଳେ କିନ୍ତୁ ମୁକ୍ତି ମିଳେ ନାହିଁ । ନିମ୍ବ ପୋତିଲେ ପିତା ଫଳ ମିଳିବ ଓ ଆମ୍ବ ମଞ୍ଜି ପୋତିଲେ ମିଠା ଫଳ ମିଳେ । ତୁମକୁ ଯେପରି ଫଳ ଦରକାର ସେହିପରି ମଞ୍ଜି ପୋତ । ମୋକ୍ଷ ପ୍ରାପ୍ତି ପାଇଁ ତପ ଅଲଗା ପ୍ରକାରର, ଅର୍ନ୍ତତପ ଆବଶ୍ୟକ । ଆଉ ଲୋକମାନେ ବାହ୍ୟ ତପକୁ ତପ ମାନି ନେଇଛନ୍ତି । ଯେଉଁ ତପ ବାହାରକୁ ଦେଖାଯାଉଛି ତାହା ମୋକ୍ଷ କାମରେ ଆସିବ ନାହିଁ । ସେହି ସବୁର ଫଳ ତ' କେବଳ ପୁଣ୍ୟ ମିଳିବ । ମୋକ୍ଷରେ ଯିବା ପାଇଁ ଅର୍ନ୍ତତପ ଦରକାର, *ଅଦିଠ ତପ* ।

**ପ୍ରଶ୍ନକର୍ତ୍ତା :** ମନ୍ତ୍ରଜପରୁ ମୋକ୍ଷ ମିଳେ ନା ଜ୍ଞାନମାର୍ଗରୁ ମୋକ୍ଷ ମିଳେ ?

**ଦାଦାଶ୍ରୀ :** ମନ୍ତ୍ରଜପ ତୁମକୁ ସଂସାରରେ ଶାନ୍ତି ଦେଇଥାଏ । ମନକୁ ଶାନ୍ତ କରାଏ, ତାହା ମନ୍ତ୍ର, ତାହା ଦ୍ୱାରା ଭୌତିକ ସୁଖ ମିଳେ । ଆଉ ମୋକ୍ଷ ଜ୍ଞାନମାର୍ଗ ବିନା ହୋଇପାରିବ ନାହିଁ । ଅଜ୍ଞାନ ଦ୍ୱାରା ବନ୍ଧନ ହୋଇଥାଏ ଓ ଜ୍ଞାନରୁ ମୁକ୍ତି ମିଳେ । ଏହି ଜଗତରେ ଯେଉଁ ଜ୍ଞାନ ଚାଲିଛି ତାହା ଇନ୍ଦ୍ରିୟ ଜ୍ଞାନ ଅଟେ । ତାହା ଭ୍ରାନ୍ତି ଅଟେ ଏବଂ ଅତିନ୍ଦ୍ରିୟ ଜ୍ଞାନ ହିଁ ବାସ୍ତବିକ ଜ୍ଞାନ ।

ଯାହାକୁ ନିଜ ସ୍ୱରୂପର ପରିଚୟ ପାଇ ମୋକ୍ଷ ଯିବାର ଅଛି ତା'କୁ କ୍ରିୟାର ଆବଶ୍ୟକତା ନାହିଁ । ଯାହାକୁ ଭୌତିକ ସୁଖର ଆବଶ୍ୟକତା ଅଛି ତା' ପାଇଁ କ୍ରିୟା ଜରୁରୀ ଅଟେ । ଯାହାକୁ ମୋକ୍ଷରେ ଯିବାର ଅଛି ତା' ପାଇଁ ଜ୍ଞାନ ଓ ଜ୍ଞାନୀର ଆଜ୍ଞା କେବଳ ଦୁଇଟି ଜିନିଷ ଜରୁରୀ ଅଟେ ।

## ଜ୍ଞାନୀ ହିଁ ପରିଚୟ କରାନ୍ତି 'ମୁଁ'ର !

**ପ୍ରଶ୍ନକର୍ତ୍ତା :** ଆପଣ କହିଲେ ଯେ ନିଜକୁ ନିଜେ ଚିହ୍ନ ତେବେ ନିଜକୁ ନିଜେ ଚିହ୍ନିବା ପାଇଁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ତେବେ ମୋ ପାଖକୁ ଆସ । 'ମୋତେ ନିଜକୁ ନିଜେ ଚିହ୍ନିବାର ଅଛି' ବୋଲି କହିବ, ତେବେ ମୁଁ ତୁମର ପରିଚୟ କରାଇଦେବି ।

**ପ୍ରଶ୍ନକର୍ତ୍ତା :** 'ମୁଁ କିଏ' ଏହା ଜାଣିବାର ଯେଉଁ କଥା, ତାହା ଏ ସଂସାରରେ ରହି କିପରି ସମ୍ଭବ ହୋଇପାରିବ ?

**ଦାଦାଶ୍ରୀ :** ତେବେ କେଉଁଠି ରହି ତାହା ଜାଣିପାରିବା ? ସଂସାରକୁ ଛାଡ଼ି ଆଉ କେଉଁ ଜାଗା ଅଛି ଯେଉଁଠି ରହିପାରିବା ? ଏହି ଜଗତରେ ସମସ୍ତେ ସଂସାରୀ ହିଁ ଅଟନ୍ତି ଆଉ ସମସ୍ତେ ସଂସାରରେ ହିଁ ରହନ୍ତି । ଏଠାରେ 'ମୁଁ କିଏ ?' ଜାଣିବାକୁ ମିଳିପାରିବ । 'ମୁଁ କିଏ ?' ଏହା ବୁଝିବାର ବିଜ୍ଞାନ ଏଠାରେ ଅଛି । ଏଠାକୁ ଆସିବ, ମୁଁ ତୁମକୁ ପରିଚିତ କରାଇଦେବି ।

## ମୋକ୍ଷର ସରଳ ଉପାୟ

ଯିଏ ମୁକ୍ତ ହୋଇସାରିଛନ୍ତି ତାଙ୍କ ପାଖକୁ ଯାଇ ଯଦି ଆମେ କହିବା ଯେ 'ମହାଶୟ, ମୋର ମୁକ୍ତି କରାଇ ଦିଅନ୍ତୁ ! ତାହା ଅନ୍ତିମ ଓ ସବୁଠାରୁ ଉତ୍ତମ ଉପାୟ । 'ସ୍ୱୟଂ କିଏ' ଏହି ଜ୍ଞାନ ଦୃଢ଼ ହୋଇଗଲେ ତା'କୁ ମୋକ୍ଷ ଗତି ମିଳିବ ଏବଂ ଆତ୍ମଜ୍ଞାନୀ ନ ମିଳିଲେ (ସେତେ ପର୍ଯ୍ୟନ୍ତ) ଆତ୍ମଜ୍ଞାନୀଙ୍କ ପୁସ୍ତକ ପଢ଼ିବା ଉଚିତ ।

ଆତ୍ମା ସାଇଣ୍ଟିଫିକ୍(ବିଜ୍ଞାନ ସମ୍ବନ୍ଧୀୟ) ବସ୍ତୁ ଅଟେ । ତାହା ପୁସ୍ତକରୁ ପ୍ରାପ୍ତି ହୋଇପାରିବା ଭଳି ବସ୍ତୁ ନୁହେଁ । ସେ ନିଜର ଗୁଣଧର୍ମ ସହିତ ଅଛି, ଚେତନ ଅଟେ ଏବଂ ସେ ହିଁ ପରମାତ୍ମା । ତାଙ୍କରି ପରିଚୟ ହୋଇଗଲା ଅର୍ଥାତ ସବୁକିଛି ହୋଇଗଲା । କଲ୍ୟାଣ ହୋଇଗଲା ଏବଂ 'ତାହା ତୁମେ' ନିଜେ ହିଁ ଅଟ !

ମୋକ୍ଷ ମାର୍ଗରେ ତପ-ତ୍ୟାଗ କିଛି ମଧ୍ୟ କରିବାର ନଥାଏ । ଜ୍ଞାନୀପୁରୁଷ ମିଳିଗଲେ ତାଙ୍କରି ଆଜ୍ଞା ହିଁ ଧର୍ମ ଓ ଆଜ୍ଞା ହିଁ ତପ ଏବଂ ଏହି ଜ୍ଞାନ, ଦର୍ଶନ, ଚାରିତ୍ର ଓ ତପ, ଯାହାର ପ୍ରତ୍ୟକ୍ଷ ଫଳ ମୋକ୍ଷ ଅଟେ ।

'ଜ୍ଞାନୀପୁରୁଷ' ମିଳିଗଲେ ମୋକ୍ଷର ମାର୍ଗ ଅତ୍ୟନ୍ତ ସହଜ ଓ ସରଳ ହୋଇଯାଏ । ଖେଚୁଡ଼ି ତିଆରି କରିବା ଠାରୁ ମଧ୍ୟ ସହଜ ହୋଇଯାଏ ।

## ୫. 'ମୁଁ' ର ପରିଚୟ-ଜ୍ଞାନୀପୁରୁଷଙ୍କ ଦ୍ୱାରା

### ଆବଶ୍ୟକତା ଗୁରୁଙ୍କର ନା ଜ୍ଞାନୀଙ୍କର ?

**ପ୍ରଶ୍ନକର୍ତ୍ତା :** ଦାଦାଜୀଙ୍କୁ ଭେଟିବା ପୂର୍ବରୁ ଯଦି ଆଉ କାହାକୁ ଗୁରୁ ରୂପେ ମାନିଥିବେ ? ତେବେ ସେମାନେ କ'ଣ କରିବେ ?

**ଦାଦାଶ୍ରୀ :** ତାଙ୍କ ନିକଟକୁ ଯିବ, ଯଦି ନ ଯିବାର ଅଛି, ତେବେ ଯିବାର ଆବଶ୍ୟକ ବି ନାହିଁ। ତୁମେ ଯିବାକୁ ଚାହୁଁଛ ତେବେ ଯାଅ ଆଉ ଯିବାର ନାହିଁ ତେବେ ନଯାଅ । କିନ୍ତୁ ତାଙ୍କୁ ଦୁଃଖ ନହେଉ, ସେଥିପାଇଁ ଯିବା ଉଚିତ୍ । ତୁମକୁ ବିନୟ ରଖିବା ଉଚିତ୍। ଏଠାରେ 'ଆତ୍ମଜ୍ଞାନ' ନେବା ସମୟରେ ଯଦି କେହି ପଚାରେ 'ଏବେ ମୁଁ ମୋର ଗୁରୁଙ୍କୁ ପରିତ୍ୟାଗ କରିଦେବି ?' ତେବେ ମୁଁ କୁହେ 'ନା ଛାଡ଼ ନାହିଁ।' ଆରେ, ସେହି ଗୁରୁଙ୍କ ପ୍ରତାପରୁ ତ' ଏଠାରେ ପହଞ୍ଚି ପାରିଛ' । ସଂସାର ଜ୍ଞାନ ବି ଗୁରୁଙ୍କ ବିନା ହୁଏ ନାହିଁ ଓ ମୋକ୍ଷର ଜ୍ଞାନ ବି ଗୁରୁଙ୍କ ବିନା ହୁଏ ନାହିଁ। ବ୍ୟାବହାରିକ ଗୁରୁ 'ବ୍ୟବହାର ପାଇଁ' ଓ ଜ୍ଞାନୀପୁରୁଷ 'ନିଶ୍ଚୟ' ପାଇଁ । ବ୍ୟବହାର ରିଲେଟିଭ୍(ଆପେକ୍ଷିକ) ଅଟେ ଏବଂ 'ନିଶ୍ଚୟ' ରିୟଲ(ବାସ୍ତବ) ଅଟେ । ରିଲେଟିଭ୍ ପାଇଁ ଗୁରୁ ଦରକାର ଓ ରିୟଲ୍ ପାଇଁ ଜ୍ଞାନୀପୁରୁଷ ଦରକାର ।

**ପ୍ରଶ୍ନକର୍ତ୍ତା :** ଏପରି ମଧ୍ୟ କୁହାଯାଏ ନା ଯେ ଗୁରୁ ବିନା ଜ୍ଞାନ କିପରି ମିଳିବ ?

**ଦାଦାଶ୍ରୀ :** ଗୁରୁ ତ' ରାସ୍ତା ଦେଖାନ୍ତି, ମାର୍ଗ ଦେଖାନ୍ତି ଏବଂ 'ଜ୍ଞାନୀପୁରୁଷ' ଜ୍ଞାନ ଦିଅନ୍ତି । 'ଜ୍ଞାନୀପୁରୁଷ' ଅର୍ଥାତ ଯାହାଙ୍କର ଜାଣିବା ପାଇଁ, କିଛି ମଧ୍ୟ ବାକି ନଥାଏ, ସ୍ୱୟଂ ତଦ୍‌ସ୍ୱରୂପରେ ଥା'ନ୍ତି । ଅର୍ଥାତ 'ଜ୍ଞାନୀପୁରୁଷ' ତୁମକୁ ସବୁକିଛି ଦେଇ ଦିଅନ୍ତି ଆଉ ଗୁରୁ ତ' ସଂସାରରେ ରାସ୍ତା ଦେଖାନ୍ତି, ତାଙ୍କ କଥା ମାନି ଚାଲିଲେ ସଂସାରରେ ସୁଖୀ ହୋଇପାରିବ । ଆଧି, ବ୍ୟାଧି ଏବଂ ଉପାଧିରେ ସମାଧି ଦିଅନ୍ତି ସେ 'ଜ୍ଞାନୀପୁରୁଷ' !

**ପ୍ରଶ୍ନକର୍ତ୍ତା :** ଜ୍ଞାନ ଗରୁଙ୍କଠାରୁ ମିଳେ, କିନ୍ତୁ ଯେଉଁ ଗୁରୁ ସ୍ୱୟଂ ଆତ୍ମସାକ୍ଷାତ୍କାର କରିସାରିଛନ୍ତି, ତାଙ୍କରି ହାତରୁ ଜ୍ଞାନ ମିଳିପାରିବ ନା ?

**ଦାଦାଶ୍ରୀ :** ସେ 'ଜ୍ଞାନୀପୁରୁଷ' ହୋଇଥିବା ଦରକାର ଆଉ ପୁଣି କେବଳ ଆତ୍ମସାକ୍ଷାତ୍କାର କରାଇଦେଲେ କିଛି ହେବ ନାହିଁ । ଯେତେବେଳେ 'ଜ୍ଞାନୀପୁରୁଷ',

'ଏହି ଜଗତ କିପରି ଚାଲୁଛି, ସ୍ୱୟଂ କିଏ, ଇଏ କିଏ', ଏପରି ସବୁ ସ୍ପଷ୍ଟ କରି ଦିଅନ୍ତି, ତେବେ ଯାଇ କାମ ପୂରା ହୁଏ । ଅନ୍ୟଥା ବହି ପଛରେ ପଡ଼ିଥାନ୍ତି, କିନ୍ତୁ ବହିସବୁ ତ 'ହେଲ୍ପର' ଅଟନ୍ତି । ତାହା ମୁଖ୍ୟ ଜିନିଷ ନୁହେଁ । ତାହା ସାଧାରଣ କାରଣ ଅଟେ, ଅସାଧାରଣ କାରଣ ନୁହେଁ । ଅସାଧାରଣ କାରଣ କେଉଁଟା ? 'ଜ୍ଞାନୀପୁରୁଷ' !

## ଅର୍ପଣ ବିଧି କିଏ କରାଇ ପାରନ୍ତି ?

**ପ୍ରଶ୍ନକର୍ତ୍ତା :** ଜ୍ଞାନ ନେବା ପୂର୍ବରୁ ଯେଉଁ ଅର୍ପଣ ବିଧି କରାନ୍ତି, ସେଥିରେ ଯଦି ଆଗରୁ କୌଣସି ଗୁରୁଙ୍କ ନିକଟରେ ଅପର୍ଣ ବିଧି କରାଇନେଇଥିବୁ,ଆଉଥରେ ଏଠି ଅପର୍ଣ ବିଧି କଲେ କ'ଣ ଉଚିତ୍ ହେବ ?

**ଦାଦାଶ୍ରୀ :** ଅପର୍ଣ ବିଧି ତ ଗୁରୁ କରାନ୍ତି ହିଁ ନାହିଁ । ଏଠାରେ କ'ଣ କ'ଣ ଅର୍ପଣ କରିବା ପାଇଁ ପଡ଼ିଥାଏ ? ଆତ୍ମା ବ୍ୟତୀତ ସବୁକିଛି । ଅର୍ଥାତ ସବୁକିଛି ଅର୍ପଣ ତ' କେହି କରେ ହିଁ ନାହିଁ ନା ! ଅର୍ପଣ ହୁଏ ମଧ୍ୟ ନାହିଁ ଏବଂ କୌଣସି ଗୁରୁ ଏପରି କୁହନ୍ତି ହିଁ ନାହିଁ । ସେ ତ' ତୁମକୁ ରାସ୍ତା ଦେଖାନ୍ତି,ସେ ଗାଇଡ଼(ମାର୍ଗଦର୍ଶକ) ରୂପେ କାର୍ଯ୍ୟ କରନ୍ତି । ମୁଁ ଗୁରୁ ନୁହେଁ, ମୁଁ ତ' ଜ୍ଞାନୀପୁରୁଷ ଅଟେ,ଆଉ ଏଠି ତ' ଭଗବାନଙ୍କୁ ଦର୍ଶନ କରିବାର ଅଛି । ମୋତେ ଅପର୍ଣ କରିବାର ନାହିଁ,ଭଗବାନଙ୍କୁ ଅର୍ପଣ କରିବାର ଅଛି ।

## ଆତ୍ମାନୁଭୂତି କିପରି ହୁଏ ?

**ପ୍ରଶ୍ନକର୍ତ୍ତା :** 'ମୁଁ ଆତ୍ମା ଅଟେ', ଏହି ଜ୍ଞାନ କିପରି ହୁଏ ? ନିଜେ ଅନୁଭବ କିପରି କରିପାରିବା ?

**ଦାଦାଶ୍ରୀ :** ଏହି ଅନୁଭବ କରାଇବା ପାଇଁ ତ' ମୁଁ ବସିଛି । ଏଠାରେ ମୁଁ ଯେବେ ଜ୍ଞାନଦିଏ, ସେତେବେଳେ 'ଆତ୍ମା' ଓ 'ଅନାତ୍ମା'କୁ ଅଲଗା କରିଦିଏ ଏବଂ ତା' ପରେ ତୁମକୁ ଘରକୁ ପଠେଇ ଦିଏ ।

ଜ୍ଞାନ ପ୍ରାପ୍ତି ଆପେ ଆପେ ହୋଇ ପାରିବ ନାହିଁ । ଯଦି ନିଜ ଦ୍ୱାରା ହୋଇପାରିଥାନ୍ତା ତେବେ ଏହି ସାଧୁ, ସନ୍ନ୍ୟାସୀ ସମସ୍ତେ କରିକି ବସିଥାନ୍ତେ । କିନ୍ତୁ ସେଠି ଜ୍ଞାନୀପୁରୁଷଙ୍କର ହିଁ କାମ । ଜ୍ଞାନୀପୁରୁଷ ତାହାର ନିମିତ୍ତ ଅଟନ୍ତି ।

ଯେପରି ଔଷଧ ପାଇଁ ଡ଼ାକ୍ତରଙ୍କ ଦରକାର ପଡ଼େ ନା ପଡ଼େ ନାହିଁ ନା ପୁଣି

ତୁମେ ନିଜେ ନିଜେ ଘରେ ଔଷଧ ବନାଇ ଦେଉଛ ? ସେଠି କେମିତି ଜାଗୃତ ରହୁଛ ଯେ କିଛି ଭୁଲ ହୋଇଗଲେ ଆମେ ମରିଯିବା ! ମାତ୍ର ଆତ୍ମା ସମ୍ବନ୍ଧରେ ନିଜେ ହିଁ ମିକ୍ସଚର(ମିଶ୍ରଣ) ବନେଇଦିଏ ! ଶାସ୍ତ୍ରକୁ ନିଜ ବୁଦ୍ଧିରେ ଗୁରୁ ଦ୍ୱାରା ଦିଆଯାଇଥିବା ଜ୍ଞାନ ବିନା ହିଁ ମିକ୍ସର କରି ପିଇଗଲେ । ଏହାକୁ ଭଗବାନ ସ୍ୱଚ୍ଛନ୍ଦ କହିଛନ୍ତି । ଏହି ସ୍ୱଚ୍ଛନ୍ଦ କାରଣରୁ ତ' ଅନନ୍ତ ଜନ୍ମର ମରଣ ହୋଇସାରିଛି । ତାହା ତ' ଗୋଟିଏ ଜନ୍ମର ମୃତ୍ୟୁଥିଲା !!!

## ଅକ୍ରମ ଜ୍ଞାନ ଦ୍ୱାରା ନଗଦ ମୋକ୍ଷ

'ଜ୍ଞାନୀପୁରୁଷ' ଏବେ ତୁମ ସମ୍ମୁଖରେ ପ୍ରତ୍ୟକ୍ଷରୂପେ ଅଛନ୍ତି ଏଣୁ ମାର୍ଗ ମଧ୍ୟ ମିଳିବ; ଅନ୍ୟଥା ଏହି ଲୋକମାନେ ମଧ୍ୟ ବହୁତ ଭାବନ୍ତି କିନ୍ତୁ ମାର୍ଗ ମିଳେ ନାହିଁ ଏବଂ ଓଲଟା ରାସ୍ତାରେ ଚାଲିଯାନ୍ତି । 'ଜ୍ଞାନୀପୁରୁଷ' ପ୍ରାୟତଃ କେବେ ଜଣେ ଅଧେ ପ୍ରକଟ ହୁଅନ୍ତି ଏବଂ ତାଙ୍କରି ପାଖରୁ ଜ୍ଞାନ ମିଳିବା ଦ୍ୱାରା ଆତ୍ମାନୁଭବ ହୋଇଥାଏ । ମୋକ୍ଷ ଏଠାରେ ନଗଦ ମିଳିବା ଉଚିତ୍ । ଏହିଠାରେ ଦେହ ସହିତ ମୋକ୍ଷ ଅନୁଭବ ହେବା ଦରକାର । ଏହି ଅକ୍ରମ ଜ୍ଞାନ ଦ୍ୱାରା ନଗଦ ମୋକ୍ଷ ମିଳେ ଓ ଅନୁଭବ ମଧ୍ୟ ହୋଇଥାଏ !

## ଜ୍ଞାନୀ ହିଁ କରାନ୍ତି ଆତ୍ମା ଓ ଅନାତ୍ମାର ଭେଦ

ଯେପରି ଏହି ମୁଦିରେ ସୁନା ଓ ତମ୍ବା ଉଭୟ ମିଶ୍ରିତ ହୋଇଛନ୍ତି, ଯଦି ତାହାକୁ ଆମେ ଗାଁରେ ନେଇ କାହାକୁ ବି କହିବା ଯେ ଭାଇ, ଅଲଗା ଅଲଗା କରିଦିଅ ! ତେବେ କ'ଣ ଯେ କେହି ମଧ୍ୟ ଅଲଗା କରିପାରିବେ ? କିଏ କରି ପାରିବ ?

**ପ୍ରଶ୍ନକର୍ତ୍ତା :** ବଣିଆ ହିଁ କରି ପାରିବ ।

**ଦାଦାଶ୍ରୀ :** ଯାହାର ଏହି କାମ,ଯିଏ ଏଥିରେ ଏକ୍ସପର୍ଟ(ଦକ୍ଷ) ଅଟେ, ସେ ସୁନା ଆଉ ତମ୍ବା ଉଭୟ ଅଲଗା କରିପାରିବ । ୧୦୦ରୁ ୧୦୦ ଭାଗ ସୁନା ଅଲଗା କରିଦେବ, କାରଣ ସେ ଦୁଇଟିର ଗୁଣଧର୍ମ ଜାଣେ ଯେ ସୁନାର ଗୁଣଧର୍ମ ଏଭଳି ଆଉ ତମ୍ବାର ଗୁଣଧର୍ମ ଏଭଳି । ଠିକ୍ ସେହିପରି ଜ୍ଞାନୀପୁରୁଷ ଆତ୍ମାର ଗୁଣଧର୍ମ ଜାଣନ୍ତି ଓ ଅନାତ୍ମାର ଗୁଣଧର୍ମ ମଧ୍ୟ ଜାଣନ୍ତି ।

ଯେପରି ମୁଦି ଭିତରେ ଥିବା ସୁନା ଓ ତମ୍ବାର ମିକ୍ସଚର(ମିଶ୍ରଣ)କୁ ଅଲଗା କରାଯାଇପାରେ, ମାତ୍ର ସୁନା ଓ ତମ୍ବା ଦୁଇଟି କମ୍ପାଉଣ୍ଡ(ଯୌଗିକ) ସ୍ୱରୂପ

ହୋଇଯାଇଥିଲେ ସେଗୁଡ଼ିକୁ ଅଲଗା କରି ହୋଇନଥାନ୍ତା । କାରଣ ଏଥିରେ ଗୁଣ-ଧର୍ମ ଅଲଗା ପ୍ରକାରର ହୋଇଯାଇଥାନ୍ତା । ଠିକ୍ ସେହିପରି ଜୀବ ଭିତରେ ଚେତନ ଓ ଅଚେତନର ମିକ୍ସଚର ଅଛି, ସେମାନେ କମ୍ପାଉଣ୍ଡ ରୂପେ ନାହାନ୍ତି । ଏଥିପାଇଁ ପୁଣି, ନିଜର ସ୍ୱଭାବ ପ୍ରାପ୍ତ କରିହେବ । କମ୍ପାଉଣ୍ଡ ହୋଇଯାଇଥିଲେ ଜଣା ପଡ଼ିନଥାନ୍ତା । ଚେତନର ଗୁଣଧର୍ମ ଜଣା ପଡ଼ିନଥାନ୍ତା, ଅଚେତନର ଗୁଣଧର୍ମ ମଧ୍ୟ ଜଣା ପଡ଼ିନଥାନ୍ତା, ଅନ୍ୟଏକ ତୃତୀୟ ଗୁଣଧର୍ମ ଉତ୍ପନ୍ନ ହୋଇଯାଇଥାନ୍ତା । କିନ୍ତୁ ଏପରି ନୁହେଁ । ସେମାନଙ୍କର କେବଳ ମିକ୍ସଚର ହୋଇଛି ।

## ଜ୍ଞାନୀପୁରୁଷ, ବିଶ୍ୱର ସବୁଠାରୁ ବଡ଼ ବୈଜ୍ଞାନିକ

'ଜ୍ଞାନୀପୁରୁଷ' ହିଁ ବିଶ୍ୱର ସବୁଠାରୁ ବଡ଼ ବୈଜ୍ଞାନିକ ଅଟନ୍ତି, ସେ ହିଁ ଦୁହିଁଙ୍କୁ ଜାଣିପାରିବେ, ସେ ହିଁ ଆତ୍ମା ଓ ଅନାତ୍ମାକୁ ଅଲଗା କରି ପାରିବେ । ସେ ଆତ୍ମା ଓ ଅନାତ୍ମାର ବିଭାଜନ କରି ଦିଅନ୍ତି କେବଳ ଏତିକି ନୁହେଁ, ତୁମର ପାପକୁ ମଧ୍ୟ ଜାଳି ପୋଡ଼ି ଭସ୍ମ କରିଦିଅନ୍ତି, ଦିବ୍ୟ ଚକ୍ଷୁ ଦିଅନ୍ତି ଏବଂ 'ଏହି ଜଗତ କ'ଣ, କିପରି ଚାଲୁଛି, କିଏ ଚଲାଉଛି', ଇତ୍ୟାଦି ସବୁକିଛି ସ୍ପଷ୍ଟ କରିଦିଅନ୍ତି, ତେବେ ଯାଇ ନିଜର କାମ ପୂରା ହୋଇଥାଏ ।

କୋଟି ଜନ୍ମର ପୁଣ୍ୟ ଜାଗରିତ ହେଲେ ଯାଇ 'ଜ୍ଞାନୀ'ଙ୍କ ଦର୍ଶନ ମିଳେ, ଅନ୍ୟଥା ଦର୍ଶନ କିଭଳି ହୋଇପାରିବ ? ଜ୍ଞାନ ପ୍ରାପ୍ତି ପାଇଁ,'ଜ୍ଞାନୀଙ୍କୁ' ଚିହ୍ନ ! ଅନ୍ୟ କୌଣସି ରାସ୍ତା ନାହିଁ । ଖୋଜିବା ଲୋକଙ୍କୁ ମିଳି ହିଁ ଯା'ନ୍ତି ।

## ୬. 'ଜ୍ଞାନୀପୁରୁଷ' କିଏ ?

## ସନ୍ଥ ଏବଂ ଜ୍ଞାନୀଙ୍କ ବ୍ୟାଖ୍ୟା

**ପ୍ରଶ୍ନକର୍ତ୍ତା :** ଏମାନେ ଯେଉଁ ସବୁ ସନ୍ଥ ହୋଇସାରିଛନ୍ତି, ସେମାନଙ୍କ ଓ ଜ୍ଞାନୀଙ୍କ ମଧ୍ୟରେ କେତେ ଅନ୍ତର ଅଛି ?

**ଦାଦାଶ୍ରୀ :** ସନ୍ଥ ଦୁର୍ବଳତାକୁ ଦୂର କରାଇଥାନ୍ତି ଆଉ ଭଲ ଶିକ୍ଷା ଦିଅନ୍ତି, ଯିଏ ଖରାପ ଅଭ୍ୟାସ ଦୂର କରାନ୍ତି ଏବଂ ଭଲ ଶିକ୍ଷା ଦିଅନ୍ତି ସେମାନଙ୍କୁ ସନ୍ଥ କୁହାଯାଏ । ଯିଏ ପାପ କର୍ମରୁ ରକ୍ଷା କରନ୍ତି ସେମାନେ ସନ୍ଥ କିନ୍ତୁ ଯିଏ ପାପ ଓ ପୁଣ୍ୟ ଉଭୟରୁ ରକ୍ଷା କରନ୍ତି ସେ ଜ୍ଞାନୀପୁରୁଷ ଅଟନ୍ତି । ସନ୍ଥପୁରୁଷ ଉଚିତ୍ ମାର୍ଗରେ ନେଇଯାନ୍ତି ଆଉ ଜ୍ଞାନୀପୁରୁଷ ମୁକ୍ତି ଦେଇଥାନ୍ତି । ଜ୍ଞାନୀପୁରୁଷଙ୍କୁ ତ' ଅନ୍ତିମ ବିଶେଷଣ କୁହାଯାଏ,

ସେ ଆମର କାମ କରାଇଦିଅନ୍ତି । ବାସ୍ତବିକ ଜ୍ଞାନୀ କିଏ ? ଯାହାଙ୍କ ଠାରେ ଅହଂକାର ଏବଂ ମମତା ଦୁଇଟିଯାକ ନଥାଏ ।

ଯାହାଙ୍କୁ ଆତ୍ମାର ସମ୍ପୂର୍ଣ୍ଣ ଅନୁଭବ ହୋଇସାରିଛି, ତାଙ୍କୁ ହିଁ 'ଜ୍ଞାନୀପୁରୁଷ' କୁହାଯାଏ । ସେ ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡର ବର୍ଣ୍ଣନା କରିପାରନ୍ତି । ସବୁ ପ୍ରଶ୍ନର ଉତ୍ତର ଦେଇପାରନ୍ତି । ଜ୍ଞାନୀପୁରୁଷ ଅର୍ଥାତ ବିଶ୍ୱର ଆଶ୍ଚର୍ଯ୍ୟ । ଜ୍ଞାନୀପୁରୁଷ ଅର୍ଥାତ ପ୍ରଜ୍ଜ୍ୱଳିତ ଦୀପକ ।

## ଜ୍ଞାନୀପୁରୁଷଙ୍କ ପରିଚୟ

**ପ୍ରଶ୍ନକର୍ତ୍ତା :** ଜ୍ଞାନୀପୁରୁଷଙ୍କୁ କିପରି ଚିହ୍ନିପାରିବା ?

**ଦାଦାଶ୍ରୀ :** ଜ୍ଞାନୀପୁରୁଷଙ୍କୁ ତ' ବିନା କିଛି କରି ମଧ୍ୟ ଚିହ୍ନି ହୁଏ, ଏପରି ଅଟନ୍ତି ସେ । ତାଙ୍କର ସୁଗନ୍ଧ ହିଁ ଜଣାପଡ଼ିଯାଏ । ତାଙ୍କର ବାତାବରଣ କିଛିଟା ଅଲଗା ପ୍ରକାର ଅଲୌକିକ ହୋଇଥାଏ ! ତାଙ୍କର ବାଣୀ ମଧ୍ୟ ଅଲଗା ହୋଇଥାଏ ! ତାଙ୍କର ଶବ୍ଦରୁ ହିଁ ଜଣା ପଡ଼ିଯାଏ । ଆରେ, ତାଙ୍କର ଆଖିକୁ ଦେଖିବା ମାତ୍ରେ ଜଣାପଡ଼ିଯାଏ । ଜ୍ଞାନୀଙ୍କ ନିକଟରେ ବହୁତ ଅଧିକ ବିଶ୍ୱସନୀୟତା ଥାଏ, ଜବରଦସ୍ତ ବିଶ୍ୱସନିୟତା ! ଏବଂ ତାଙ୍କର ପ୍ରତ୍ୟେକ ଶବ୍ଦ ଶାସ୍ତ୍ରରୂପ ହୋଇଥାଏ,ଯଦି ବୁଝିପାର ତେବେ । ତାଙ୍କର ବାଣୀ-ବର୍ତ୍ତନ(ବ୍ୟବହାର) ଓ ବିନୟ ମନୋହର ହୋଇଥାଏ । ଏହିପରି ଅନେକ ଲକ୍ଷଣ ଥାଏ ।

ଜ୍ଞାନୀପୁରୁଷ ଅବୁଦ୍ଧ ଅଟନ୍ତି । ଯିଏ ଆତ୍ମାର ଜ୍ଞାନୀ ଅଟନ୍ତି, ସେ ପରମ ସୁଖୀ ହୋଇଥାନ୍ତି ଆଉ ତାଙ୍କୁ କିଞ୍ଚିତ୍‌ମାତ୍ର ମଧ୍ୟ ଦୁଃଖ ହୁଏ ନାହିଁ । ଏଥିପାଇଁ ତାଙ୍କଠାରେ ନିଜର କଲ୍ୟାଣ ହୋଇଯାଏ । ଯିଏ ନିଜର କଲ୍ୟାଣ କରିସାରିଛନ୍ତି ସେ ହିଁ ଅନ୍ୟର କଲ୍ୟାଣ କରିପାରିବେ । ଯିଏ ନିଜେ ପହଁରି ପାରେ ସେ ହିଁ ଆମକୁ କୂଳରେ ପହଞ୍ଚାଇ ପାରିବ । ସେଠାରେ(ଜ୍ଞାନୀଙ୍କ ନିକଟରେ) ଲକ୍ଷ ଲକ୍ଷ ଲୋକ ପହଁରି ପାରି ହୋଇଯାନ୍ତି ।

ଶ୍ରୀମଦ୍ ରାଜଚନ୍ଦ୍ର କ'ଣ କହିଛନ୍ତି ଯେ 'ଜ୍ଞାନୀପୁରୁଷ ସିଏ ଯାହାଙ୍କର କିଞ୍ଚିତ୍ ମାତ୍ର ମଧ୍ୟ କୌଣସି ପ୍ରକାର ସ୍ପୃହା ନଥାଏ, ଦୁନିଆରେ କୌଣସି ପ୍ରକାର ଭିକ ନଥାଏ, ଉପଦେଶ ଦେବାର ମଧ୍ୟ ଭିକ ଯାହାଙ୍କୁ ନଥାଏ, ଶିଷ୍ୟ କରିବାର ଭିକ ନଥାଏ, କାହାରିକୁ ସୁଧାରିବା ପାଇଁ ମଧ୍ୟ ଭିକ ନଥାଏ, କୌଣସି ପ୍ରକାର ଗର୍ବ ନଥାଏ, ଗାରବତା ମଧ୍ୟ ନଥାଏ, ମାଲିକୀଭାବ ନଥାଏ ।

## ୭. ଜ୍ଞାନୀପୁରୁଷ-ଏ.ଏମ୍. ପଟେଲ (ଦାଦାଶ୍ରୀ)

ଦାଦା ଭଗବାନ, ଯିଏ ଚଉଦଲୋକର ନାଥ ଅଟନ୍ତି । ସେ ତୁମ ଭିତରେ ମଧ୍ୟ ଅଛନ୍ତି, କିନ୍ତୁ ପ୍ରକଟ ହୋଇନାହାନ୍ତି । ତୁମ ଭିତରେ ଅବ୍ୟକ୍ତ ରୂପେ ଅଛନ୍ତି କିନ୍ତୁ ଏଠାରେ ବ୍ୟକ୍ତ ହୋଇଛନ୍ତି । ଯିଏ ବ୍ୟକ୍ତ ହୋଇଛନ୍ତି, ସେ ଫଳ ଦିଅନ୍ତି । ଥରେ ମଧ୍ୟ ତାଙ୍କର ନାମ ନେଲେ କାମ ହୋଇଯାଏ । କିନ୍ତୁ ସଠିକ୍ ପରିଚୟ ପାଇ ସାରିବା ପରେ କହିଲେ ତ' କଲ୍ୟାଣ ହୋଇଯିବ ଏବଂ ସାସାଂରିକ ବସ୍ତୁର ଯଦି ସମସ୍ୟା ଥାଏ ତେବେ ତାହା ମଧ୍ୟ ଦୂର ହୋଇଯିବ ।

ଏ ଯିଏ ଦେଖାଉଛନ୍ତି ସେ 'ଦାଦା ଭଗବାନ' ନୁହଁନ୍ତି । ତୁମକୁ ଯିଏ ଦେଖାଯାଉଛନ୍ତି, ତାଙ୍କୁ ହିଁ 'ଦାଦା ଭଗବାନ' ମନେ କରୁଛ ବୋଧ ହୁଏ କିନ୍ତୁ ଏହି ଦେଖାଯାଉଥିବା ବ୍ୟକ୍ତି ଜଣକ ଭାଦରଣର ପଟେଲ ଅଟନ୍ତି । ମୁଁ 'ଜ୍ଞାନୀପୁରୁଷ' ଅଟେ ଏବଂ ଯିଏ ଭିତରେ ପ୍ରକଟ ହୋଇଛନ୍ତି, ସେ ଦାଦା ଭଗବାନ ଅଟନ୍ତି । ମୁଁ ନିଜେ ଭଗବାନ ନୁହେଁ । ମୋ ଭିତରେ ପ୍ରକଟ ହୋଇଥିବା ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ । ମୋର ଦାଦା ଭଗବାନଙ୍କ ସହିତ ଜୁଦାପନ(ଭିନ୍ନତା)ର ବ୍ୟବହାର ଅଟେ । କିନ୍ତୁ ଲୋକମାନେ ଭାବନ୍ତି ଯେ ଏ ନିଜେ ହିଁ ଦାଦା ଭଗବାନ । ନା, ନିଜେ ଦାଦା ଭଗବାନ କିପରି ହୋଇପାରିବି ? ଏ ତ' ପଟେଲ୍ ଅଟନ୍ତି, ଭାଦରଣର ନିବାସୀ ।

(ଏହି ଜ୍ଞାନ ନେବା ପରେ) ଦାଦାଜୀଙ୍କ ଆଜ୍ଞା ପାଳନ କରିବା ଅର୍ଥାତ ତାହା 'ଏ.ଏମ୍.ପଟେଲ'ଙ୍କ ଆଜ୍ଞା ନୁହେଁ । ସ୍ୱୟଂ 'ଦାଦା ଭଗବାନ'ଙ୍କ, ଯିଏ ଚଉଦ ଲୋକର ନାଥ ଅଟନ୍ତି, ତାଙ୍କରି ଆଜ୍ଞା ଅଟେ । ଏହାର ଗ୍ୟାରେଣ୍ଟୀ(ପ୍ରତିଶ୍ରୁତି) ଦେଉଛି । ଏହା କେବଳ ମୋ ମାଧ୍ୟମରେ ହେଉଛି । ଏଥିପାଇଁ ତୁମକୁ ସେହି ଆଜ୍ଞା ପାଳନ କରିବାକୁ ହେବ । 'ମୋ ଆଜ୍ଞା' ନୁହେଁ, ଏହା 'ଦାଦା ଭଗବାନଙ୍କ' ଆଜ୍ଞା ଅଟେ । ମୁଁ ମଧ୍ୟ ସେହି ଭଗବାନଙ୍କ ଆଜ୍ଞା ପାଳନ କରେ !

## ୮. କ୍ରମିକ ମାର୍ଗ – ଅକ୍ରମ ମାର୍ଗ

ମୋକ୍ଷରେ ଯିବାପାଇଁ ଦୁଇଟି ମାର୍ଗ ଅଛି : ପ୍ରଥମଟି ହେଉଛି- 'କ୍ରମିକ ମାର୍ଗ' ଓ ଦ୍ୱିତୀୟଟି ହେଉଛି - 'ଅକ୍ରମ ମାର୍ଗ' । କ୍ରମିକ ଅର୍ଥାତ ସିଢ଼ି ପରେ ସିଢ଼ି ଚଢ଼ିବା । ଯେପରି କ୍ରମିକରେ ପରିଗ୍ରହ କମ୍ କରି କରି ଯିବ ସିଏ ତୁମକୁ ମୋକ୍ଷ ଆଡ଼କୁ ନେଇଯିବ, ତାହା ମଧ୍ୟ ଅନେକ କାଳ ପରେ ଆଉ ଏହି ଅକ୍ରମ ମାର୍ଗ ମାନେ

କ'ଣ ? ସିଡ଼ି ଚଢ଼ିବାକୁ ପଡ଼ିବ ନାହିଁ, ଲିଫ୍ଟରେ ବସିଯାଅ ଆଉ ଦ୍ୱାଦଶ ମହଲ୍ଲାରେ ପହଞ୍ଚିଯାଅ । ଚୁପ୍‌ଚାପ୍ ଲିଫ୍ଟରେ ବସି ସ୍ତ୍ରୀ-ପିଲାଙ୍କ ସହିତ ପୁଅ-ଝିଅଙ୍କ ବିବାହ କରାଇ, ସବୁକିଛି କରି ମୋକ୍ଷରେ ଯିବ । ଏ ସବୁକିଛି କଲେ ମଧ୍ୟ ତୁମର ମୋକ୍ଷ କୁଆଡ଼େ ଯିବ ନାହିଁ । ଏଭଳି ଅକ୍ରମ ମାର୍ଗକୁ ଅପବାଦ ମାର୍ଗ ମଧ୍ୟ କୁହାଯାଏ । ଏହା ପ୍ରତି ଦଶ ଲକ୍ଷ ବର୍ଷରେ ପ୍ରକଟ ହୁଏ । ତେବେ ଯିଏ ଏହି ଲିଫ୍ଟରେ ବସିଯିବ ତା'ର କଲ୍ୟାଣ ହୋଇଯିବ । ମୁଁ ତ' ନିମିତ୍ତ ଅଟେ । ଯିଏ ଏହି ଲିଫ୍ଟରେ ବସିଯାଏ, ସେମାନଙ୍କ ସମସ୍ତ ପ୍ରଶ୍ନର ସମାଧାନ ଆପେ ଆପେ ହୋଇଯାଏ । ସମାଧାନ ତ' ମିଳିବ ହିଁ ନା ? ଆମେ ମୋକ୍ଷକୁ ହିଁ ଯାଉଛନ୍ତି, ସେହି ଲିଫ୍ଟରେ ବସିଥିବାର ପ୍ରମାଣ ତ' ଥିବା ଦରକାର ନା ? ଏହାର ପ୍ରମାଣ ହେଉଛି କ୍ରୋଧ-ମାନ-ମାୟା-ଲୋଭ ନ ହେବା, ଆର୍ତ୍ତଧ୍ୟାନ ଓ ରୌଦ୍ରଧ୍ୟାନ ନ ହେବା । ତେବେ ପୁଣି ପୂରା କାମ ହୋଇଗଲାନା ?

## ଅକ୍ରମ ସରଳତାରେ ଆତ୍ମାନୁଭୂତି କରାଏ

କ୍ରମିକ ମାର୍ଗରେ କେତେ ଚେଷ୍ଟା କଲା ପରେ ଯାଇ ଆତ୍ମା ଅଛି ବୋଲି ଧ୍ୟାନରେ ଆସିଥାଏ, ତାହା ମଧ୍ୟ ଅତ୍ୟନ୍ତ ଅସ୍ପଷ୍ଟ ଏବଂ ଲକ୍ଷ୍ୟ ତ' ସ୍ଥିର ରୁହେ ହିଁ ନାହିଁ । ଆତ୍ମା ଏଭଳି ଅଟେ ବୋଲି ଲକ୍ଷ୍ୟରେ ରଖିବାକୁ ପଡ଼ିଥାଏ । ଆଉ ତୁମକୁ ଅକ୍ରମ ମାର୍ଗରେ ସିଧାସଳଖ ଆତ୍ମାନୁଭୂତି ହୋଇଯାଏ । ମୁଣ୍ଡବିନ୍ଧା ହେବା, ଭୋକ ଲାଗିବା ଇତ୍ୟାଦି ଯେତେ ବି ବାହ୍ୟ ସମସ୍ୟା ଆସିଲେ ମଧ୍ୟ ଭିତରେ *ଶାତା*(ସୁଖ ପରିଣାମ) ଯାଏ ନାହିଁ, ଏହାକୁ ହିଁ ଆତ୍ମାନୁଭବ କୁହାଯାଏ । ଆତ୍ମାନୁଭବ ଦୁଃଖକୁ ବି ସୁଖରେ ପରିବର୍ତ୍ତନ କରି ଦିଏ ଏବଂ ମିଥ୍ୟାତ୍ୱୀକୁ ସୁଖରେ ମଧ୍ୟ ଦୁଃଖର ଅନୁଭବ ହୋଇଥାଏ ।

ଏହା ଅକ୍ରମ ବିଜ୍ଞାନ ଅଟେ । ଏଥିପାଇଁ ଏତେ ଶୀଘ୍ର ସମକିତ୍ ହୋଇଯାଏ, ଏହି ବିଜ୍ଞାନ ଅତ୍ୟନ୍ତ ଉଚ୍ଚ କୋଟୀର ଅଟେ । ଆତ୍ମା ଓ ଅନାତ୍ମା ମଧ୍ୟରେ ଅର୍ଥାତ ତୁମର ଓ ପରର ଜିନିଷକୁ ବିଭାଜନ କରିଦିଏ, ଯେ ଏହା ତୁମର ଏବଂ ଏହା ତୁମର ନୁହେଁ ! ଦୁହିଁଙ୍କ ମଝିରେ Within one hour(ମାତ୍ର ଏକ ଘଣ୍ଟାରେ) Line of demarcation(ଭେଦରେଖା) ଟାଣିଦିଏ । ତୁମେ ନିଜେ ପରିଶ୍ରମ କରି ଚେଷ୍ଟା କରିବ ତେବେ ଲକ୍ଷ ଲକ୍ଷ ଜନ୍ମ ପରେ ମଧ୍ୟ କୌଣସି ଠିକଣା ନଥିବ ।

## 'ମୋତେ' ଭେଟିଲା ସେ ଅଧିକାରୀ

**ପ୍ରଶ୍ନକର୍ତ୍ତା** : ଏହି ମାର୍ଗ ଏତେ ସରଳ ଅଟେ, ତେବେ ପୁଣି ଅଧିକାର

(ପାତ୍ରତା) ଭଳି କିଛି ଦେଖିବାର ନାହିଁ ? ପ୍ରତ୍ୟେକଙ୍କ ପାଇଁ ଏହା ସମ୍ଭବ ?

**ଦାଦାଶ୍ରୀ :** ମୋତେ ଲୋକମାନେ ପଚାରନ୍ତି ଯେ, ମୁଁ ଏଥିପାଇଁ ଯୋଗ୍ୟ କି ? ସେତେବେଳେ ମୁଁ କୁହେ, ମୋତେ ଭେଟିଲୁ, ଏଥିପାଇଁ ତୁ ଯୋଗ୍ୟ । ମୋ ସହିତ ଭେଟ ହେବା, ଏହା ପଛରେ ସାଇଣ୍ଟିଫିକ୍ ସରକମ୍‌ଷ୍ଟେନସିୟାଲ୍ ଏଭିଡେନ୍ସ ରହିଛି । ଏଥିପାଇଁ ଯିଏ ମଧ୍ୟ ମୋ ସଂସ୍ପର୍ଶରେ ଆସେ ସେ ଯୋଗ୍ୟ ଅଟେ । ସେ କେଉଁ ଆଧାରରେ ମୋତେ ଭେଟେ ? ସେ ଯୋଗ୍ୟ ଅଟେ,ସେଥିପାଇଁ ତ' ମୋ ସହ ଦେଖା ହୁଏ । ମୋତେ ଭେଟିବା ପରେ ବି ଯଦି ତା'କୁ ଜ୍ଞାନ ପ୍ରାପ୍ତି ନ ହୁଏ, ତେବେ ତା'ର ଅନ୍ତରାୟ କର୍ମ ବାଧକ ଅଟେ ।

## କ୍ରମରେ କରିବାକୁ ପଡ଼େ, ଆଉ ଅକ୍ରମରେ...

ଥରେ ଜଣେ ଭାଇ ପ୍ରଶ୍ନ କଲେ ଯେ କ୍ରମ ଓ ଅକ୍ରମ ମଧ୍ୟରେ କ'ଣ ପାର୍ଥକ୍ୟ ? ମୁଁ ତାଙ୍କୁ କହିଲି, କ୍ରମ ଅର୍ଥାତ ଯେପରି ସମସ୍ତେ କୁହନ୍ତି ଯେ ଭୁଲକୁ ଛାଡ଼ ଏବଂ ଠିକ୍‌କୁ ଆପଣାଅ । ବାରମ୍ବାର ଏପରି କରିବାର ନାମ କ୍ରମିକମାର୍ଗ । କ୍ରମ ଅର୍ଥାତ ସବୁକିଛି ଛାଡ଼ିବାକୁ କୁହନ୍ତି, କପଟ-ଲୋଭ ଛାଡ଼ ଆଉ ଭଲକାମ କର । ଏହା ହିଁ ତୁମେ ଦେଖିଛ ନା ଆଜି ପର୍ଯ୍ୟନ୍ତ ? ଏବଂ ଅକ୍ରମମାନେ କରିବାକୁ ପଡ଼େ ନାହିଁ, କରୋମି-କରୋସି-କରୋତି ନାହିଁ !

ଅକ୍ରମ ବିଜ୍ଞାନ ତ' ବହୁତ ବଡ଼ ଆଶ୍ଚର୍ଯ୍ୟ ଅଟେ । ଏଠାରେ 'ଆତ୍ମଜ୍ଞାନ' ନେବାର ପରଦିନ ଠାରୁ ବ୍ୟକ୍ତି ମଧ୍ୟରେ ପରିବର୍ତ୍ତନ ଆସିଯାଏ । ଏ ସବୁ ଶୁଣିବା ମାତ୍ରେ ଲୋକମାନଙ୍କର ଏହି ବିଜ୍ଞାନ ସ୍ୱୀକାର ହୋଇଯାଏ ଏବଂ ଏଠିକୁ ଟାଣିହୋଇ ଚାଲିଆସନ୍ତି ।

ଅକ୍ରମରେ ମୂଳ ରୂପରେ ଭିତରୁ ହିଁ ଆରମ୍ଭ ହୋଇଥାଏ । କ୍ରମିକ ମାର୍ଗରେ ଶୁଦ୍ଧତା ମଧ୍ୟ ଭିତରୁ ହୋଇପାରେ ନାହିଁ, ତାହାର କାରଣ ହେଉଛି ଯେ କାପାସିଟୀ (ସାମର୍ଥ୍ୟ) ନାହିଁ, ଏପରି ମଶୀନାରୀ(ଯନ୍ତ୍ରପାତି) ନାହିଁ ଏଥିପାଇଁ ବାହ୍ୟ ପ୍ରଣାଳୀକୁ ବ୍ୟବହାର କରନ୍ତି, କିନ୍ତୁ ସେ ବାହ୍ୟ ଉପାୟ ଭିତରେ କେବେ ପହଁଞ୍ଚିବ ? ମନ-ବଚନ-କାୟାର ଏକତା ଥିବ, ତେବେ ଭିତରେ ପହଁଞ୍ଚିବ ଏବଂ ଭିତରୁ ଆରମ୍ଭ ହେବ । ଆଜିକାଲି ତ' ମନ-ବଚନ-କାୟାର ଏକତା ହିଁ ନାହିଁ ।

### ଏକାତ୍ମଯୋଗ ବିଚ୍ଛିନ୍ନ ହେବାଦ୍ୱାରା ଅପବାଦରୂପେ ପ୍ରକଟ ହେଲା ଅକ୍ରମ

ଜଗତ ଷ୍ଟେପ୍ ବାଇ ଷ୍ଟେପ୍ (ସିଢ଼ି ପରେ ସିଢ଼ି), କ୍ରମଶଃ ଆଗକୁ ବଢ଼ିବାର

ମୋକ୍ଷ ମାର୍ଗ ଖୋଜି ବାହାର କରିଛି ମାତ୍ର ତାହା ସେତେବେଳ ପର୍ଯ୍ୟନ୍ତ ସମ୍ଭବ ଥିଲା ଯେତେବେଳ ପର୍ଯ୍ୟନ୍ତ ଯାହା ମନ ଭିତରେ ଥିଲା, ଠିକ୍ ସେହିପରି ବାଣୀ କୁହାଯାଉଥିଲା ଏବଂ ଠିକ୍ ସେହିପରି ଆଚରଣ ଥିଲା, ସେ ପର୍ଯ୍ୟନ୍ତ ସେହିପରି ମୋକ୍ଷମାର୍ଗ ସମ୍ଭବ, ଅନ୍ୟଥା ସେହି ମାର୍ଗ ବନ୍ଦ ହୋଇଯାଏ । କିନ୍ତୁ ଏହି କାଳରେ ମନ-ବଚନ-କାୟାର ଏକତା ଭାଙ୍ଗିଯାଇଛି ଏଥିପାଇଁ କ୍ରମିକମାର୍ଗ ଫ୍ରାକ୍‌ଚର (ନିଷ୍କ୍ରିୟ) ହୋଇଯାଇଛି । ସେଇଥିପାଇଁ କହୁଛି ଏହି କ୍ରମିକ ମାର୍ଗର ବେସମେଣ୍ଟ (ମୂଳଦୁଆ) ସଢ଼ି ଗଲାଣି । ଏଣୁ ଏହି ଅକ୍ରମ ମାର୍ଗ ପ୍ରକଟ ହୋଇଛି । ଏଠାରେ ସବୁକିଛି ଅନୁମତି ଅଛି, ତୁ ଯେପରି ହେଲେ ଚଳିବ, ତୁ ଏଠାରେ ମୋତେ ସାକ୍ଷାତ କଲୁ ତେବେ ବହୁତ ହୋଇଗଲା ! ଅର୍ଥାତ ଆମକୁ ଆଉ କୌଣସି ଝଞ୍ଜଟ କରିବାର ହିଁ ନାହିଁ ।

## 'ଜ୍ଞାନୀ'ଙ୍କ କୃପାରୁ ହିଁ 'ପ୍ରାପ୍ତି'

**ପ୍ରଶ୍ନକର୍ତ୍ତା :** ଆପଣ ଯେଉଁ ଅକ୍ରମମାର୍ଗ କହିଲେ, ତାହା ଆପଣଙ୍କ ପରି 'ଜ୍ଞାନୀ'ଙ୍କ ପାଇଁ ଠିକ୍ ଅଛି, ସରଳ ଅଟେ । କିନ୍ତୁ ଆମପରି ସାମାନ୍ୟ, ସଂସାରରେ ରହୁଥିବା, କାମ କରୁଥିବା ଲୋକମାନଙ୍କ ପାଇଁ ତାହା ଅତ୍ୟନ୍ତ କଠିନ । ତେବେ ତା' ପାଇଁ କ'ଣ ଉପାୟ ଅଛି ?

**ଦାଦାଶ୍ରୀ :** 'ଜ୍ଞାନୀପୁରୁଷ'ଙ୍କ ଠାରେ ଭଗବାନ ପ୍ରକଟ ହୋଇସାରିଥାନ୍ତି, ଚଉଦ ଲୋକର ନାଥ ପ୍ରକଟ ହୋଇସାରିଥାନ୍ତି, ଏପରି 'ଜ୍ଞାନୀପୁରୁଷ' ମିଳିଗଲେ ଆଉ କ'ଣ ବାକି ରହିଲା ? ତୁମ ଶକ୍ତିରେ କିଛି କରିବାର ନାହିଁ, ତାଙ୍କରି କୃପାରୁ ହୋଇଥାଏ । କୃପାରୁ ହିଁ ସବୁକିଛି ବଦଳିଯାଏ । ଏଥିପାଇଁ ଏଠାରେ ତୁମେ ଯାହା କିଛି ମାଗ ତାହା ସବୁକିଛି ହିସାବ ପୂରଣ ହୋଇଥାଏ । ତୁମକୁ କିଛି ମଧ୍ୟ କରିବାର ନାହିଁ । ତୁମକୁ କେବଳ 'ଜ୍ଞାନୀପୁରୁଷ'ଙ୍କ ଆଜ୍ଞାରେ ରହିବାର ଅଛି । ଏହା 'ଅକ୍ରମବିଜ୍ଞାନ' ଅଟେ । ଅର୍ଥାତ ପ୍ରତ୍ୟକ୍ଷ ଭଗବାନଙ୍କ ନିକଟରୁ କାର୍ଯ୍ୟ ହାସଲ କରାଇନେବାର ଅଛି ଏବଂ ସେ ଜାଗୃତି ତୁମକୁ ପ୍ରତିକ୍ଷଣ ରହିଥାଏ, ଘଣ୍ଟେ ଦି' ଘଣ୍ଟା ପାଇଁ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ତାଙ୍କୁ(ଜ୍ଞାନୀଙ୍କୁ) ସବୁକିଛି ସମର୍ପି ଦେଲେ ସେ ସବୁକିଛି କରନ୍ତି ?

**ଦାଦାଶ୍ରୀ :** ସେ ହିଁ ସବୁକିଛି କରିବେ, ତୁମକୁ କିଛି ମଧ୍ୟ କରିବାର ନାହିଁ । କରିଲେ ତ' କର୍ମବନ୍ଧନ ହେବ । ତୁମକୁ କେବଳ ଲିଫ୍ଟରେ ବସିବାର ଅଛି । ଲିଫ୍ଟରେ ପାଞ୍ଚଟି ଆଜ୍ଞା ପାଳନ କରିବାର ଅଛି । ଲିଫ୍ଟରେ ବସିବା ପରେ ଡ଼ିଆଁ ଡ଼େଇଁ କରିବ

ନାହିଁ , ହାତ ବାହାରକୁ କାଢ଼ିବ ନାହିଁ, ବାସ୍ ଏତିକି ତୁମକୁ କରିବାକୁ ପଡ଼ିବ । କେବେ କେବେ ଏହି ମାର୍ଗ ପୁଣ୍ୟବାନମାନଙ୍କ ପାଇଁ ବାହାରିଥାଏ । ବିଶ୍ୱରେ ଏହାକୁ ଏଗାରତମ ଆଶ୍ଚର୍ଯ୍ୟ କୁହାଯାଏ ! ଅପବାଦରେ ଯାହାକୁ ଟିକଟ ମିଳିଗଲା, ତା'ର କାମ ହୋଇଗଲା ।

## ଅକ୍ରମମାର୍ଗ ଚାଲୁଅଛି

ଏଥିରେ ମୋର ହେତୁ ଏତିକି ଯେ 'ମୁଁ ଯେଉଁ ସୁଖ ପାଇଛି, ସେ ସୁଖ ତୁମେ ମଧ୍ୟ ପ୍ରାପ୍ତ କର' । ଅର୍ଥାତ ଏପରି ଯେଉଁ ବିଜ୍ଞାନ ପ୍ରକଟ ହୋଇଛି, ତାହା ଏମିତି ହିଁ ଦବିଯିବାବାଲା ନୁହଁ । ମୁଁ ମୋ ପଛରେ ଜ୍ଞାନୀଙ୍କର ବଂଶାବଳୀ ଛାଡ଼ିଯିବି । ମୋର ଉତ୍ତରାଧିକାରୀ ଛାଡ଼ିଯିବି ଏବଂ ଏହାପରେ ଜ୍ଞାନୀଙ୍କର ଲିଙ୍କ୍ ଚାଲୁରହିବ । ଏଥିପାଇଁ ସଜୀବନ ମୂର୍ତ୍ତି ଖୋଜ । ଏହାଛଡ଼ା ଆଉ କିଛି ଉପାୟ ନାହିଁ ।

ମୁଁ ତ' କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପଛରେ କେହି ଦରକାର କି ନାହିଁ ? ଆଗାମୀ ପିଢ଼ି ପାଇଁ କ'ଣ ମାର୍ଗ ଦରକାର ନାହିଁ ?

## ୯. ଜ୍ଞାନବିଧି କ'ଣ ?

**ପ୍ରଶ୍ନକର୍ତ୍ତା :**ଆପଣଙ୍କ ଜ୍ଞାନବିଧି କ'ଣ ?

**ଦାଦାଶ୍ରୀ :** ଜ୍ଞାନବିଧିରେ ତ' ସେପାରେଶନ୍ କରିବାକୁ ପଡ଼େ, *ପୁଦ୍‌ଗଲ* ଓ ଆତ୍ମାର ! ଶୁଦ୍ଧ ଚେତନ ଏବଂ *ପୁଦ୍‌ଗଲ*(ଶରୀର) ଦୁହିଁଙ୍କର ସେପାରେଶନ ।

**ପ୍ରଶ୍ନକର୍ତ୍ତା :**ଏହି ସିଦ୍ଧାନ୍ତ ତ' ଠିକ୍ ଅଛି କିନ୍ତୁ ଏହାର ପଦ୍ଧତି କ'ଣ, ଏହା ଜାଣିବାକୁ ଚାହୁଁଛି ।

**ଦାଦାଶ୍ରୀ :** ଏଥିରେ ନେବା-ଦେବା ପରି କିଛି ହୁଏ ନାହିଁ, କେବଳ ଏଠାରେ ବସି ଯେପରି କୁହାଯିବ ସେହିପରି କହିବାକୁ ହେବ ('ମୁଁ କିଏ' ତାହାର ପରିଚୟ କରାଇବା ପାଇଁ, ଦୁଇ ଘଣ୍ଟାର ଜ୍ଞାନ ପ୍ରୟୋଗ ହୋଇଥାଏ । ସେଥିରୁ ଅଠଚାଳିଶ ମିନିଟ ଆତ୍ମା-ଅନାତ୍ମାର ଭେଦ କରୁଥିବା ଭେଦବିଜ୍ଞାନର ବାକ୍ୟ ଉଚ୍ଚାରଣ କରାଯାଇଥାଏ । ଯାହା ସମସ୍ତଙ୍କୁ ସାମୂହିକ ରୂପେ କହିବାକୁ ପଡ଼ିଥାଏ । ତା'ପରେ ଗୋଟିଏ ଘଣ୍ଟାରେ ପାଞ୍ଚଟି ଆଜ୍ଞା ଉଦାହରଣ ସହିତ ବିସ୍ତାର ପୂର୍ବକ ବୁଝାଯାଏ, ଯେ ଏବେ ବାକି ଜୀବନ କିପରି ବ୍ୟତୀତ କରିବ ଯାହାଦ୍ୱାରା ନୂଆ କର୍ମ ବନ୍ଧାହେବ ନାହିଁ ଓ ପୁରୁଣା କର୍ମ ପୂର୍ଣ୍ଣତୟା ଶେଷ ହୋଇଯିବ,ଏବଂ ତାହା ସହିତ 'ମୁଁ ଶୁଦ୍ଧାତ୍ମା ଅଟେ' ର ଲକ୍ଷ୍ୟ ସର୍ବଦା ରହିବ !)

# ୧୦. ଜ୍ଞାନବିଧିରେ କ'ଣ ହୁଏ ?

ମୁଁ ଜ୍ଞାନ ଦିଏ, ଏହାଦ୍ୱାରା କର୍ମ ଭସ୍ମୀଭୂତ ହେବା ସଙ୍ଗେ ସଙ୍ଗେ ଅନେକ ଆବରଣ ମଧ୍ୟ ନଷ୍ଟ ହୋଇଯାଏ । ସେତେବେଳେ ଭଗବାନଙ୍କ କୃପା ହୁଏ ଓ ସେ ନିଜେ ଜାଗୃତ ହୋଇଯାଏ । ଜାଗୃତ ହେବା ପଶ୍ଚାତ୍ ସେହି ଜାଗୃତି ଯାଏ ନାହିଁ । ପରେ ନିରନ୍ତର ଜାଗୃତ ରହିପାରେ । ଅର୍ଥାତ ନିରନ୍ତର ପ୍ରତୀତି ରହିବ ହିଁ ରହିବ । ଆତ୍ମାର ଅନୁଭବ ହେଲା ମାନେ ଦେହାଧ୍ୟାସ ଚାଲିଗଲା । ଦେହାଧ୍ୟାସ ଚାଲିଗଲା ମାନେ କର୍ମବାନ୍ଧିବା ମଧ୍ୟ ବନ୍ଦ ହୋଇଗଲା । ପ୍ରଥମ ମୁକ୍ତି ଅଜ୍ଞାନରୁ ହୁଏ । ପୁଣି ଗୋଟିଏ ଦୁଇଟି ଜନ୍ମରେ ଅନ୍ତିମ ମୁକ୍ତି ମିଳିଯାଏ ।

## ଜ୍ଞାନାଗ୍ନିରେ କର୍ମ ଭସ୍ମୀଭୂତ ହୁଏ

ଯେଉଁ ଦିନ ଏହି 'ଜ୍ଞାନ' ଦିଆଯାଏ ସେହି ଦିନ କ'ଣ ହୁଏ ? ଜ୍ଞାନାଗ୍ନିରେ ତା'ର ଯେଉଁ କର୍ମ ଥାଏ, ସେଗୁଡ଼ିକ ଭସ୍ମୀଭୂତ ହୋଇଯାଏ । ଦୁଇ ପ୍ରକାର କର୍ମ ଭସ୍ମୀଭୂତ ହୋଇଯାଏ ଏବଂ ଗୋଟିଏ ପ୍ରକାର କର୍ମ ବାକି ରହିଯାଏ । ଯେଉଁ କର୍ମ ଗୁଡ଼ିକ ବାଷ୍ପଭଳି ସେଗୁଡ଼ିକ ନାଶ ହୋଇଯାଏ ଆଉ ଯେଉଁଗୁଡ଼ିକ ପାଣି ଭଳି ତାହା ମଧ୍ୟ ନଷ୍ଟ ହୋଇଯାଏ କିନ୍ତୁ ଯେଉଁ କର୍ମ ବରଫ ଭଳି ତାହା ନଷ୍ଟ ହୁଏ ନାହିଁ, କାରଣ ସେଗୁଡ଼ିକ ଜମାଟ ବାନ୍ଧି ଯାଇଛି । ଯେଉଁ କର୍ମ ଫଳ ଦେବା ପାଇଁ ପ୍ରସ୍ତୁତ ହୋଇସାରିଛି, ତାହା ପୁଣି ଛାଡ଼େ ନାହିଁ । କିନ୍ତୁ ପାଣି ଓ ବାଷ୍ପ ସ୍ୱରୂପି ଯେଉଁ କର୍ମ, ସେମାନଙ୍କୁ ଜ୍ଞାନାଗ୍ନି ନଷ୍ଟ କରିଦିଏ । ଏଥିପାଇଁ ଜ୍ଞାନ ପାଇବା ମାତ୍ରେ ଲୋକମାନେ ହାଲୁକା ହୋଇଯାନ୍ତି । ସେମାନଙ୍କ ଜାଗୃତି ଏକାଥରେ ବଢ଼ିଯାଏ । କାରଣ ଯେ ପର୍ଯ୍ୟନ୍ତ କର୍ମ ଭସ୍ମୀଭୂତ ନ ହୋଇଛି ସେ ପର୍ଯ୍ୟନ୍ତ ମନୁଷ୍ୟର ଜାଗୃତି ବଢ଼େ ହିଁ ନାହିଁ । ବରଫ ସ୍ୱରୂପି ଯେଉଁ କର୍ମ ଅଛି ତାହା ତ' ଆମକୁ ଭୋଗିବାକୁ ହିଁ ପଡ଼ିବ । ଏବଂ ସେଗୁଡ଼ିକ କିପରି ସରଳତାର ସହିତ ଭୋଗିହେବ ତାହାର ମଧ୍ୟ ରାସ୍ତା ମୁଁ କହିଛି, ଯେ "ଭାଇ, ଏହି 'ଦାଦା ଭଗବାନଙ୍କ ଅସୀମ ଜୟ ଜୟକାର ହେଉ' ଗାଇବ, ତ୍ରିମନ୍ତ୍ରର ଉଚ୍ଚାରଣ କରିବ, ନଅ କଲମ ପଢ଼ିବ ।"

ସଂସାରୀ ଦୁଃଖର ଅଭାବ, ଏହା ହେଉଛି ମୁକ୍ତିର ପ୍ରଥମ ଅନୁଭବ । ଯେତେବେଳେ ମୁଁ ତୁମକୁ 'ଜ୍ଞାନ' ଦିଏ, ସେତେବେଳେ ଏହା ତୁମକୁ ତା' ପରଦିନ ଠାରୁ ହିଁ ହୋଇଯାଏ । ତା'ପରେ ଏହି ଶରୀରର ବୋଝ, କର୍ମର ବୋଝ ସବୁକିଛି ନଷ୍ଟ ହୋଇଯାଏ, ଏହା ହେଉଛି ଦ୍ୱିତୀୟ ଅନୁଭବ । ତା' ପରେ ଏତେ ପରିମାଣରେ

ଆନନ୍ଦ ମିଳେ ଯେ ଯାହାର ବର୍ଣ୍ଣନା କରାଯାଇ ନପାରେ !!

**ପ୍ରଶ୍ନକର୍ତ୍ତା :** ଆପଣଙ୍କଠାରୁ ଯେଉଁ ଜ୍ଞାନ ମିଳିଲା, ତାହା ଆତ୍ମଜ୍ଞାନ ଅଟେ ନା ?

**ଦାଦାଶ୍ରୀ :** ମିଳେ, ତାହା ଆତ୍ମଜ୍ଞାନ ନୁହେଁ । ଭିତରେ ପ୍ରକଟ ହେଲା ତାହା ଆତ୍ମଜ୍ଞାନ ଅଟେ । ମୁଁ ଉଚ୍ଚାରଣ କରାଏ ଆଉ ତୁମେ କୁହ ତେବେ କହିବା ସଙ୍ଗେ ସଙ୍ଗେ ପାପ ଭସ୍ମୀଭୂତ ହୋଇଯାଏ ଏବଂ ଜ୍ଞାନ ଭିତରେ ପ୍ରକଟ ହୋଇଯାଏ । ତାହା ତୁମ ଭିତରେ ପ୍ରକଟ ହୋଇଗଲା ନା ?

**ମହାତ୍ମା :** ହଁ, ହୋଇଗଲା ।

**ଦାଦାଶ୍ରୀ :** ଆତ୍ମା ପ୍ରାପ୍ତ କରିବା କ'ଣ କିଛି ସହଜକଥା ? ଏହା ପଛରେ (ଜ୍ଞାନବିଧି ସମୟରେ) ଜ୍ଞାନାଗ୍ନିରେ ପାପ ଭସ୍ମୀଭୂତ ହୋଇଯାଏ । ଆଉ କ'ଣ ହୁଏ ? ଆତ୍ମା ଓ ଦେହ ଅଲଗା ହୋଇଯାନ୍ତି । ତୃତୀୟରେ ଭଗବାନଙ୍କ କୃପା ବରଷି ଥାଏ, ଯାହାଦ୍ୱାରା ନିରନ୍ତର ଜାଗୃତି ଉତ୍ପନ୍ନ ହୋଇଯାଏ, ଏହାଦ୍ୱାରା ପ୍ରଜ୍ଞାର ପ୍ରାରମ୍ଭ ହୋଇଯାଏ ।

## ଦ୍ୱିତୀୟା ଠାରୁ ପୂର୍ଣ୍ଣିମା

ଯେତେବେଳେ ମୁଁ ଜ୍ଞାନ ଦିଏ ସେତେବେଳେ ଅନାଦିକାଳରୁ ଅର୍ଥାତ ଲକ୍ଷ ଲକ୍ଷ ଜନ୍ମର ଯେଉଁ ଅମାବାସ୍ୟା ଥିଲା, ଅମାବାସ୍ୟା କ'ଣ ବୁଝିଲ ? 'ନୋ ମୁନ୍(ବିନା ଚନ୍ଦ୍ରମା)' ଅନାଦି କାଳରୁ 'ଡ଼ାର୍କନେସ(ଅନ୍ଧାର)' ରେ ହିଁ ଜୀବନ ଜିଉଁଛନ୍ତି ସମସ୍ତେ । ପ୍ରକାଶ ହିଁ ଦେଖିନାହାନ୍ତି । ଚନ୍ଦ୍ର ଦେଖି ହିଁ ନଥିଲେ ! ତ' ଯେତେବେଳେ ମୁଁ ଜ୍ଞାନ ଦିଏ ସେତେବେଳେ ମୁନ୍ ପ୍ରକଟ ହୋଇଯାଏ । ପ୍ରଥମେ ତାହା ଦ୍ୱିତୀୟାର ଚନ୍ଦ୍ର ପରି ପ୍ରକାଶ ଦିଏ । ସମ୍ପୂର୍ଣ୍ଣ ଜ୍ଞାନ ଦେବା ପରେ ମଧ୍ୟ ଭିତରେ କେତେ ପ୍ରକଟ ହୁଏ ? ମାତ୍ର ଦ୍ୱିତୀୟାର ଚନ୍ଦ୍ରମା ପରି । ପରେ ଏହି ଜନ୍ମରେ ପୂର୍ଣ୍ଣିମା ହୋଇଯାଉ ସେ ପର୍ଯ୍ୟନ୍ତ ଆପଣଙ୍କୁ କରିବାର ଅଛି । ପୁଣି ଦ୍ୱିତୀୟାରୁ ତୃତୀୟା ହେବ, ଚତୁର୍ଥୀ ହେବ, ଚତୁର୍ଥୀରୁ ପଞ୍ଚମି ହେବ...ଏବଂ ପୂର୍ଣ୍ଣିମା ହୋଇଯିବ ତେବେ ପୁଣି କମ୍ପ୍ଲିଟ(ପୂରା) ହୋଇଗଲା ! ଅର୍ଥାତ କେବଳଜ୍ଞାନ ହୋଇଗଲା । କର୍ମ ବାନ୍ଧିହେବ ନାହିଁ, କର୍ମ ବନ୍ଧନ ଅଟକିଯିବ । କ୍ରୋଧ-ମାନ-ମାୟା-ଲୋଭ ବନ୍ଦ ହୋଇଯିବ । ପୂର୍ବରୁ ବାସ୍ତବରେ ନିଜକୁ ନିଜେ ଯେଉଁ ଚନ୍ଦୁଭାଇ ମାନୁଥିଲ, ତାହା ଭ୍ରାନ୍ତି ଥିଲା । ବାସ୍ତବରେ 'ମୁଁ ଚନ୍ଦୁଭାଇ ଅଟେ' ତାହା ଚାଲିଗଲା । ସେହି ଭ୍ରାନ୍ତି ଚାଲିଗଲା । ଏବେ ତୁମକୁ ଯେଉଁ ଆଜ୍ଞା ଦେଇଛି, ସେହି ଆଜ୍ଞାରେ ରହିବ ।

ଏଠି ଜ୍ଞାନବିଧିକୁ ଆସିବ, ତେବେ ମୁଁ ସବୁ ପାପ ଧୋଇଦେବି । ତା'ପରେ

ତୁମକୁ ନିଜର ଦୋଷ ଦେଖାଯିବ ଆଉ ନିଜର ଦୋଷ ଦେଖାଯାଏ, ସେବେଠାରୁ ବୁଝିନେବ ଯେ  ମୋକ୍ଷରେ ଯିବାର ପ୍ରସ୍ତୁତି ଆରମ୍ଭ ହେଲା ।

## ୧୧. ଆତ୍ମଜ୍ଞାନ ପ୍ରାପ୍ତି ପରେ ଆଜ୍ଞା ପାଳନର ମହତ୍ତ୍ୱ

## ଆଜ୍ଞା, ଜ୍ଞାନର ପ୍ରୋଟେକସନ୍(ସୁରକ୍ଷା) ପାଇଁ

ମୁଁ ଜ୍ଞାନ ଦେବା ପରେ ତୁମକୁ ଆତ୍ମ-ଅନୁଭବ ହୋଇଗଲା ପରେ କେଉଁ କାମ ବାକି ଥାଏ ? ଜ୍ଞାନୀପୁରୁଷଙ୍କ 'ଆଜ୍ଞା'ର ପାଳନ । 'ଆଜ୍ଞା' ହିଁ ଧର୍ମ ଓ 'ଆଜ୍ଞା' ହିଁ ତପ । ଆଉ ମୋର ଆଜ୍ଞା ସଂସାର(ବ୍ୟବହାର) ରେ ଆଦୌ ବାଧକ ନୁହେଁ । ସଂସାରରେ ରହି ମଧ୍ୟ ସଂସାରର ପ୍ରଭାବ ପଡ଼େ ନାହିଁ, ଏପରି ଅଟେ ଏହି ଅକ୍ରମ ବିଜ୍ଞାନ ।

ଏହି ଯୁଗ ଏପରି ଯେ ସର୍ବତ୍ର କୁସଙ୍ଗ ଥା'ନ୍ତି । ରୋଷେଇ ଘରୁ ଆରମ୍ଭ କରି ଅଫିସ୍‌ରେ, ଘରେ, ରାସ୍ତାରେ, ବାହାରେ, ଗାଡ଼ିରେ, ଟ୍ରେନ୍‌ରେ ଏହିପରି ସର୍ବତ୍ର କୁସଙ୍ଗ ଥା'ନ୍ତି । ତୁମକୁ ଦୁଇ ଘଣ୍ଟାରେ ଦିଆଯାଇଥିବା ଜ୍ଞାନ ଏହି କୁସଙ୍ଗ ହିଁ ନଷ୍ଟ କରିଦିଏ । ଏଥିପାଇଁ ପାଞ୍ଚଟି ଆଜ୍ଞାର ସୁରକ୍ଷା ବାଡ଼ ଦେଇଛି ଯାହାକି ପ୍ରୋଟେକସନ୍ ଦେବ, ଯାହାଦ୍ୱାରା ଭିତରେ ଆଦୌ କୌଣସି ପ୍ରଭାବ ପଡ଼ିବ ନାହିଁ । ଏ ଜ୍ଞାନ, ଯେପରି ଥିଲା ସେପରି ହିଁ ରହିବ । ଯଦି ବାଡ଼ ଭାଙ୍ଗିଯାଏ ତେବେ ଜ୍ଞାନକୁ ଖତମ କରିଦେବ, ଧୂଳିରେ ମିଶାଇଦେବ ।

ଯେଉଁ ଜ୍ଞାନ ମୁଁ ତୁମକୁ ଦେଇଛି ତାହା ଭେଦ ଜ୍ଞାନ ଅଟେ ଏବଂ ଅଲଗା ମଧ୍ୟ କରିଦେଇଛି ମାତ୍ର ଏବେ ତାହା ଅଲଗା ହିଁ ରହୁ ଏଥିପାଇଁ, ଏହି ପାଞ୍ଚଟି ବାକ୍ୟ ତୁମକୁ ପ୍ରୋଟେକସନ୍ ପାଇଁ ଦେଉଛି ଯାହାଦ୍ୱାରା ଏ କଳି ଯୁଗରେ ସମସ୍ତେ ଲୁଟି ନନେଇଯାନ୍ତୁ । ମଞ୍ଜି(ବୋଧ ବୀଜ) ରୁ ଗଛ ହେବା ପାଇଁ ପାଣି ଛିଞ୍ଚିବାକୁ ପଡ଼ିବ ନା ନାହିଁ ? ବାଡ଼ ଦେବା ପାଇଁ ପଡ଼ିବ କି ନାହିଁ ?

## 'ଜ୍ଞାନ' ପରେ କେଉଁ ସାଧନା ?

**ପ୍ରଶ୍ନକର୍ତ୍ତା :** ଏହି ଜ୍ଞାନ ପରେ ଏବେ କେଉଁ ପ୍ରକାର ସାଧନା କରିବା ଉଚିତ୍ ?

**ଦାଦାଶ୍ରୀ :** ପାଞ୍ଚ ଆଜ୍ଞା ପାଳନ କରିବା ହିଁ ସାଧନା । ଏବେ ଅନ୍ୟ କୌଣସି ସାଧନା ନାହିଁ । ଅନ୍ୟ ସବୁ ସାଧନା ବନ୍ଧନକାରକ ଅଟେ । ଏହି ପାଞ୍ଚଆଜ୍ଞା ମୁକ୍ତ କରାଇବ ।

**ପ୍ରଶ୍ନକର୍ତ୍ତା :** ଏହି ଯେଉଁ ପାଞ୍ଚଟି ଆଜ୍ଞା, ଏଥିରେ ଏମିତି କ'ଣ ଅଛି ?

**ଦାଦାଶ୍ରୀ :** ପାଞ୍ଚ ଆଜ୍ଞାର ଗୋଟିଏ ବାଡ଼, ତୁମର ମାଲ ଭିତରୁ କେହି ଚୋରି କରି ନନେଇଯାଉ ସେପରି ବାଡ଼ ବାନ୍ଧିବ ତେବେ ଯେପରି ମୁଁ ଦେଇଛି ଭିତରେ ଏକଜାକ୍ଟ ସେପରି ହିଁ ରହିବ । ଆଉ ବାଡ଼ ଯଦି ଢିଲା ଥିବ ତା'ହେଲେ କେହି ବି ଭିତରକୁ ପଶି ନଷ୍ଟ କରିଦେବ । ତେବେ ତାହାକୁ ମରାମତି କରିବା ପାଇଁ ପୁଣି ମୋତେ ଆସିବାକୁ ପଡ଼ିବ । ଯେ ପର୍ଯ୍ୟନ୍ତ ଏହି ପାଞ୍ଚଟି ଆଜ୍ଞାରେ ରହିବ ସେ ପର୍ଯ୍ୟନ୍ତ ସମାଧିର ଗ୍ୟାରେଣ୍ଟି ଦେଉଛି ।

## ଆଜ୍ଞା ଦ୍ୱାରା ତୀବ୍ର ପ୍ରଗତି

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ଜ୍ଞାନ ପାଇବା ପରେ ଆମର, ମହାତ୍ମାମାନଙ୍କର ଯେଉଁ ପ୍ରଗତି ହୁଏ ସେହି ପ୍ରଗତିର ସ୍ପୀଡ୍(ବେଗ) କାହା ଉପରେ ଆଧାରିତ ? କ'ଣ କଲେ ଦ୍ରୁତ ଗତିରେ ପ୍ରଗତି ହେବ ?

**ଦାଦାଶ୍ରୀ :** ପାଞ୍ଚ ଆଜ୍ଞା ପାଳନ କଲେ ସବୁକିଛି ଦ୍ରୁତ ଗତିରେ ହେବ ଏବଂ ପାଞ୍ଚ ଆଜ୍ଞା ହିଁ ତାହାର କାରଣ । ପାଞ୍ଚ ଆଜ୍ଞା ପାଳିବା ଦ୍ୱାରା ଆବରଣ ନଷ୍ଟ ହୋଇଚାଲେ । ଶକ୍ତିସବୁ ପ୍ରକଟ ହେବା ଆରମ୍ଭ ହୋଇଯାଏ । ଅବ୍ୟକ୍ତ ଶକ୍ତିଗୁଡ଼ିକ ବ୍ୟକ୍ତ ହୁଏ । ପାଞ୍ଚ ଆଜ୍ଞା ପାଳନ କଲେ ଐଶ୍ୱର୍ଯ୍ୟ ବ୍ୟକ୍ତ ହୁଏ । ସବୁ ପ୍ରକାର ଶକ୍ତି ପ୍ରକଟ ହୁଏ । ଆଜ୍ଞାପାଳନ ଉପରେ ନିର୍ଭର କରେ ।

ମୋ ଆଜ୍ଞାପ୍ରତି ସିନସିଅର(Sincere) ରହିବା ହିଁ ସବୁଠାରୁ ମୁଖ୍ୟ ଗୁଣ ଅଟେ । ଆଜ୍ଞା ପାଳନ କରିବାରେ ଯିଏ ଅବୁଦ୍ଧ ହୋଇଯିବ ସେ ମୋ ପରି ହୋଇଯିବ ! କିନ୍ତୁ ଯେ ପର୍ଯ୍ୟନ୍ତ ଆଜ୍ଞା ପାଳନ କରୁଛ, ସେ ପର୍ଯ୍ୟନ୍ତ ଆଜ୍ଞାରେ କୌଣସି ବଦଳ ନହେବା ଉଚିତ । ତେବେ କୌଣସି ଅସୁବିଧା ହେବ ନାହିଁ ।

## ଦୃଢ଼ 'ନିଶ୍ଚୟ' ଦ୍ୱାରା ହିଁ ଆଜ୍ଞା ପାଳନ

ଦାଦାଙ୍କ ଆଜ୍ଞା ପାଳନ କରିବାର ଅଛି ଏହା ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଆଜ୍ଞା ପାଳନ କରିବାର ଅଛି ଏପରି 'ନିଶ୍ଚୟ' କରିବା ଉଚିତ୍ । ଆଜ୍ଞା ପାଳନ ହୋଇପାରୁଛି ନା ନାହିଁ ତାହା ତୁମକୁ ଦେଖିବା ଦରକାର ନାହିଁ । ଆଜ୍ଞା ଯେତିକି ପାଳନ ହୋଇପାରୁଛି ସେତିକି ଠିକ୍, କିନ୍ତୁ ତୁମକୁ ଆଜ୍ଞା ପାଳନ କରିବା ପାଇଁ 'ନିଶ୍ଚୟ' କରିବା ଉଚିତ୍ ।

**ପ୍ରଶ୍ନକର୍ତ୍ତା :** ଆଜ୍ଞା ପାଳନ କମ୍ ବା ବେଶୀ ହେଲେ, ସେଥିରେ କିଛି ଅସୁବିଧା ନାହିଁ ତ ?

**ଦାଦାଶ୍ରୀ :** ଅସୁବିଧା ନାହିଁ, ଏପରି ନୁହେଁ । ତୁମକୁ 'ନିଶ୍ଚୟ' କରିବାକୁ ପଡ଼ିବ ଯେ,ଯେମିତି ହେଲେ ମଧ୍ୟ ମୁଁ ଆଜ୍ଞା ପାଳନ କରିବି । ସକାଳୁ ସ୍ଥିର କରିବାର ଅଛି ଯେ, ମୋତେ ପାଞ୍ଚ ଆଜ୍ଞାରେ ରହିବାର ଅଛି,ପାଳନ କରିବାର ଅଛି । ସ୍ଥିର କଲା, ସେବେଠୁ ମୋ ଆଜ୍ଞାରେ ଆସିଗଲା । ମୋତେ ଏତିକି ମାତ୍ର ଦରକାର ।

ଆଜ୍ଞା ପାଳନ କରିବା ଭୁଲିଗଲେ ପ୍ରତିକ୍ରମଣ କରିବ ଯେ, 'ହେ ଦାଦା ଦୁଇ ଘଣ୍ଟା ପାଇଁ ମୁଁ ଭୁଲିଯାଇଥିଲି, ଆପଣଙ୍କ ଆଜ୍ଞା ଭୁଲିଯାଇଥିଲି କିନ୍ତୁ ମୋତେ ତ' ଆଜ୍ଞା ପାଳନ କରିବାର ଅଛି । ମୋତେ କ୍ଷମା କରିଦିଅନ୍ତୁ ।' ତେବେ ପୂର୍ବର ସବୁ ପରୀକ୍ଷାରେ ପାସ(ଉତ୍ତୀର୍ଣ୍ଣ) । ଶହେରୁ ଶହେ ନମ୍ବର ମିଳିବ । ଏହା ଦ୍ୱାରା ଜୋଖିମଦାରୀ(ବିପଦର ଆଶାଙ୍କା) ରହିବ ନାହିଁ । ଆଜ୍ଞା ପାଳନ କଲେ ସଂସାର ସ୍ପର୍ଶ କରିବ ନାହିଁ । ମୋ ଆଜ୍ଞା ପାଳନ କଲେ ତୁମକୁ କିଛି ବି ସ୍ପର୍ଶ କରିବ ନାହିଁ ।

## 'ଆଜ୍ଞା' ପାଳନ ଦ୍ୱାରା ବାସ୍ତବିକ ପୁରୁଷାର୍ଥର ଆରମ୍ଭ

ମୁଁ ତୁମକୁ ଜ୍ଞାନ ଦେଇ ପ୍ରକୃତିରୁ ଅଲଗା କରିଦେଲି । 'ମୁଁ ଶୁଦ୍ଧାତ୍ମା' ଅର୍ଥାତ୍ ପୁରୁଷ ଏବଂ ଏହା ପରେ ବାସ୍ତବିକ ପୁରୁଷାର୍ଥ ହୋଇଥାଏ, ଏହା ହିଁ ରିଅଲ୍(ବାସ୍ତବିକ) ପୁରୁଷାର୍ଥ ।

**ପ୍ରଶ୍ନକର୍ତ୍ତା :** ରିଅଲ୍ ପୁରୁଷାର୍ଥ ଏବଂ ରିଲେଟିଭ୍(ଆପେକ୍ଷିକ) ପୁରୁଷାର୍ଥ ଏ ଦୁଇଟି ମଧ୍ୟରେ କ'ଣ ପାର୍ଥକ୍ୟ ?

**ଦାଦାଶ୍ରୀ :**ରିଅଲ୍ ପୁରୁଷାର୍ଥରେ କିଛି କରିବା ଭଳି ନଥାଏ । ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ ଏହା ଯେ ରିଅଲ୍ ପୁରୁଷାର୍ଥ ଅର୍ଥାତ 'ଦେଖିବା' ଓ 'ଜାଣିବା' ଏବଂ ରିଲେଟିଭ୍ ପୁରୁଷାର୍ଥ ଅର୍ଥାତ କ'ଣ ? ଭାବ କରିବା । ମୁଁ ଏପରି କରିବି ।

ତୁମେ ଚନ୍ଦୁଭାଇ ଥିଲ ଆଉ ପୁରୁଷାର୍ଥ କରୁଥିଲ ତାହା ଭ୍ରାନ୍ତିର ପୁରୁଷାର୍ଥ ଥିଲା କିନ୍ତୁ ଯେତେବେଳେ 'ମୁଁ ଶୁଦ୍ଧାତ୍ମା' ଏହି ପଦ ପ୍ରାପ୍ତ କଲ ଏବଂ ତା' ପରେ ପୁରୁଷାର୍ଥ କରିବ, ଦାଦାଙ୍କ ପାଞ୍ଚଟି ଆଜ୍ଞାରେ ରହିବ, ତେବେ ଏହା ରିଅଲ୍ ପୁରୁଷାର୍ଥ ଅଟେ । ପୁରୁଷ(ପଦ)ର ପ୍ରାପ୍ତି ହେବା ପରେ ପୁରୁଷାର୍ଥ କଲା କୁହାଯିବ ।

**ପ୍ରଶ୍ନକର୍ତ୍ତା :** ଏହି ଯେଉଁ ଜ୍ଞାନ ମଞ୍ଜି ପୋତିଲେ ତାହା ହିଁ ପ୍ରକାଶ, ତାହା ହିଁ ଜ୍ୟୋତି ?

**ଦାଦାଶ୍ରୀ :** ହଁ! କିନ୍ତୁ ମଞ୍ଜି ରୂପରେ । ଏବେ ଧୀରେ ଧୀରେ ପୂର୍ଣ୍ଣିମା ହେବ । *ପୁଦ୍‌ଗଲ* ଓ ପୁରୁଷ ଦୁହେଁ ଅଲଗା ହେଲେ, ସେହି ଦିନଠାରୁ ହିଁ ବାସ୍ତବିକ ପୁରୁଷାର୍ଥ ଆରମ୍ଭ ହୋଇଥାଏ । ଯେଉଁଠି ପୁରୁଷାର୍ଥର ଆରମ୍ଭ ହେଲା, ତେବେ ସେ ଦ୍ୱିତୀୟାରୁ ପୂର୍ଣ୍ଣିମା କରିଦେବ । ହଁ! ଏହି ଆଜ୍ଞା ପାଳନ କରିବ ତେବେ ସେହିପରି ହେବ । ଆଉ କିଛି ମଧ୍ୟ କରିବାର ନାହିଁ କେବଳ ଆଜ୍ଞା ପାଳନ କରିବାର ଅଛି ।

**ପ୍ରଶ୍ନକର୍ତ୍ତା :** ଦାଦା, ପୁରୁଷ ହୋଇଯିବା ପରେ ପୁରୁଷାର୍ଥର ଟିକିଏ ବର୍ଣ୍ଣନା କରନ୍ତୁ । ସେହି ବ୍ୟକ୍ତି ବ୍ୟବହାରରେ କିପରି ଆଚରଣ କରିଥାଏ ?

**ଦାଦାଶ୍ରୀ :** ଅଛନ୍ତି ନା ଏମାନେ ସବୁ, ଏ ଆମର ସବୁ ମହାତ୍ମା ପାଞ୍ଚ ଆଜ୍ଞାରେ ରହନ୍ତି ନା ! ପାଞ୍ଚ ଆଜ୍ଞା, ତାହାହିଁ ଦାଦା, ତାହା ହିଁ ରିଅଲ୍ ପୁରୁଷାର୍ଥ ।

ପାଞ୍ଚ ଆଜ୍ଞା ପାଳନ କରିବା ହିଁ ପୁରୁଷାର୍ଥ ଅଟେ ଏବଂ ପାଞ୍ଚ ଆଜ୍ଞାର ପରିଣାମସ୍ୱରୂପ କ'ଣ ହୁଏ ? ଜ୍ଞାତା-ଦ୍ରଷ୍ଟା ପଦରେ ରହା ଯାଇପାରେ ଆଉ ମୋତେ ଯଦି କେହି ପଚାରେ ଯେ ବାସ୍ତବିକ ପୁରୁଷାର୍ଥ କ'ଣ ? ତେବେ ମୁଁ କହିବି, 'ଜ୍ଞାତା-ଦ୍ରଷ୍ଟା' ରହିବା,ଏହି ପାଞ୍ଚ ଆଜ୍ଞା ଜ୍ଞାତା-ଦ୍ରଷ୍ଟା ରହିବା ହିଁ ଶିଖାଇଥାଏ ନା ? ମୁଁ ଦେଖୁଛି ଯେ, ଯେଉଁଠି ଯେଉଁମାନେ ସ୍ୱଚ୍ଛ ହୃଦୟରେ ପୁରୁଷାର୍ଥ ଆରମ୍ଭ କରିଛନ୍ତି, ସେମାନଙ୍କ ଉପରେ ମୋ କୃପା ଅବଶ୍ୟ ହିଁ ବୃଷ୍ଟି ହେଉଛି ।

## ୧୨. ଆତ୍ମାନୁଭବ ତିନୋଟି ଷ୍ଟେଜ୍‌ରେ, ଅନୁଭବ-ଲକ୍ଷ୍ୟ-ପ୍ରତୀତି

**ପ୍ରଶ୍ନକର୍ତ୍ତା :** ଆତ୍ମାର ଅନୁଭବ ହୋଇଗଲା ପରେ କ'ଣ ହୁଏ ?

**ଦାଦାଶ୍ରୀ :** ଆତ୍ମାର ଅନୁଭବ ହୋଇଗଲା, ଅର୍ଥାତ ଦେହାଧ୍ୟାସ ଚାଲିଗଲା । ଦେହାଧ୍ୟାସ ଚାଲିଗଲା ଅର୍ଥାତ କର୍ମ ବନ୍ଧନ ବନ୍ଦ ହୋଇଗଲା । ଏହା ଠାରୁ ଆଉ ଅଧିକ କ'ଣ ଦରକାର ?

ପୂର୍ବରୁ ଚନ୍ଦୁଭାଇ କ'ଣ ଥିଲେ ଆଉ ଆଜି ଚନ୍ଦୁଭାଇ କ'ଣ ଅଟନ୍ତି ଏହା ବୁଝି ହେଉଛି । ତେବେ ଏହି ପରିବର୍ତ୍ତନ କିପରି ? ଆତ୍ମ-ଅନୁଭବ ଦ୍ୱାରା । ପୂର୍ବରୁ ଦେହାଧ୍ୟାସର ଅନୁଭବ ଥିଲା ଏବଂ ଏବେ ଏ ଆତ୍ମ-ଅନୁଭବ ଅଛି ।

ପ୍ରତୀତି ଅର୍ଥାତ ସମ୍ପୂର୍ଣ୍ଣ ମାନ୍ୟତା ଶତ ପ୍ରତିଶତ ବଦଳିଗଲା ଏବଂ 'ମୁଁ ଶୁଦ୍ଧାତ୍ମା ହିଁ ଅଟେ'ଏହା ସମ୍ପୂର୍ଣ୍ଣ ରୂପେ ନିଶ୍ଚିତ ହୋଇଗଲା । 'ମୁଁ ଶୁଦ୍ଧାତ୍ମା ଅଟେ' ଏହି ଶ୍ରଦ୍ଧା ବସେ କିନ୍ତୁ ପୁନର୍ବାର ଚାଲିଯାଏ,ଏବଂ ପ୍ରତୀତି ଯାଏ ନାହିଁ । ଶ୍ରଦ୍ଧା ବଦଳିଯାଏ, କିନ୍ତୁ ପ୍ରତୀତି ବଦଳେ ନାହିଁ ।

ଏହି ପ୍ରତୀତି ଅର୍ଥାତ ମନେକର ଆମେ ଏଠି ଏହି କାଠଟି ରଖିଲେ ଏବେ ତା'ଉପରେ ବହୁତ ଚାପ ପଡ଼ିଲେ ତାହା ଟିକିଏ ବାଙ୍କି ଯିବ କିନ୍ତୁ ତା' ଜାଗାରୁ ହଟିବନି । ଭଲା କେତେ ବି କର୍ମର ଉଦୟ ଆସୁ, ଖରାପ ଉଦୟ ଆସୁ ତଥାପି ସ୍ଥାନ ଛାଡ଼ିବ ନାହିଁ । 'ମୁଁ ଶୁଦ୍ଧାତ୍ମା ଅଟେ', ଏ ପ୍ରତୀତି କେବେ ଯିବ ନାହିଁ ।

ଅନୁଭବ, ଲକ୍ଷ୍ୟ ଓ ପ୍ରତୀତି ଏହି ତିନୋଟି ଯାକ ରହିବେ । ପ୍ରତୀତି ସର୍ବଦା ରହିବ । ଲକ୍ଷ୍ୟ କେବେ କେବେ ରହିବ । ବ୍ୟବସାୟରେ ଅବା କୌଣସି କାମରେ ଲାଗିଗଲେ ତେବେ ପୁଣି ଲକ୍ଷ୍ୟ ରହେ ନାହିଁ ଏବଂ କାମ ସରିବା ପରେ ପୁଣି ଲକ୍ଷ୍ୟରେ ଆସିଯାଏ । ଆଉ ଅନୁଭବର ସ୍ୱାଦ ତ'ସେତେବେଳେ ଆସିବ ଯେତେବେଳେ ତୁମେ ସବୁ କାର୍ଯ୍ୟରୁ ନିବୃତ୍ତ ହୋଇ ଏକାନ୍ତରେ ବସିଥିବ । ତଥାପି ଅନୁଭବ ତ' ବଢ଼ି ଚାଲୁଥାଏ ।

ଅନୁଭବ, ଲକ୍ଷ୍ୟ ଓ ପ୍ରତୀତି । ପ୍ରତୀତି ମୁଖ୍ୟ, ଏହା ଆଧାର ଅଟେ । ଏହି ଆଧାର ତିଆରି ହେବା ପରେ ଲକ୍ଷ୍ୟ ଉତ୍ପନ୍ନ ହୁଏ । ଏହା ପରେ 'ମୁଁ ଶୁଦ୍ଧାତ୍ମା ଅଟେ' ଏହା ନିରନ୍ତର ଲକ୍ଷ୍ୟରେ ରହିଥାଏ ଏବଂ କେବେ ଆରାମରେ ବସିଥିବା ସମୟରେ ଜ୍ଞାତା-ଦ୍ରଷ୍ଟା ରହିଲେ ତାହା ଅନୁଭବରେ ଆସିଥାଏ ।

## ୧୩. ପ୍ରତ୍ୟକ୍ଷ ସତ୍‌ସଙ୍ଗର ମହତ୍ତ୍ୱ

### ସମସ୍ୟାର ସମାଧାନ ପାଇଁ ସତ୍‌ସଙ୍ଗର ଆବଶ୍ୟକତା

ଏହି 'ଅକ୍ରମ ବିଜ୍ଞାନ' ମାଧ୍ୟମରେ ତୁମକୁ ମଧ୍ୟ ଆତ୍ମାନୁଭବ ପ୍ରାପ୍ତ ହୋଇଛି । କିନ୍ତୁ ତାହା ତୁମକୁ ଅତି ସହଜରେ ମିଳିଗଲା, ଏଣୁ ତୁମର ନିଜର ଲାଭ ହୁଏ, ପ୍ରଗତି କରାଯାଇପାରେ । ବିଶେଷ ରୂପେ, 'ଜ୍ଞାନୀ'ଙ୍କ ପରିଚୟରେ ରହି ବୁଝିନେବାର ଅଛି ।

ଏହି ଜ୍ଞାନ ଭଲଭାବରେ ବୁଝିନେବାକୁ ହେବ । କାରଣ ଏହି ଜ୍ଞାନ ଗୋଟିଏ ଘଣ୍ଟାରେ ଦିଆଯାଇଛି । କେତେ ବଡ଼ ଜ୍ଞାନ ! ଯାହା କୋଟି ଜନ୍ମରେ ହୋଇପାରେ ନାହିଁ ସେହି ଜ୍ଞାନ ଗୋଟିଏ ଘଣ୍ଟାରେ ହୋଇଯାଉଛି । କିନ୍ତୁ ବେସିକ୍(ମୌଳିକ) ସଦୃଶ ହୋଇଥାଏ । ପୁଣି ବିସ୍ତୃତ ଭାବରେ ବୁଝିନେବାକୁ ହେବ ନା ? ଏହାକୁ ସମ୍ପୂର୍ଣ୍ଣ ଭାବରେ ବୁଝିବାକୁ ହେଲେ ତୁମେ ମୋ ନିକଟରେ ବସି ପଚାରିଲେ ମୁଁ ତୁମକୁ ବୁଝାଇ ଦେବି । ଏଥିପାଇଁ ମୁଁ କୁହେ ଯେ ସତ୍‌ସଙ୍ଗର ବହୁତ ଆବଶ୍ୟକତା ଅଛି । ତୁମେ ଯେପରି-ଯେପରି ପ୍ରଶ୍ନ ପଚାରି ଚାଲିବ, ସେପରି-ସେପରି ଭିତରୁ ମୁକ୍ତ ହୋଇ ଚାଲିବ । ଯାହାକୁ ପ୍ରଶ୍ନ ବିବ୍ରତ କରୁଛି,ତା'କୁ ପଚାରି ନେବା ଉଚିତ୍ ।

## ମଞ୍ଜି ପୋତିବା ପରେ ପାଣି ଛିଞ୍ଚିବା ଆବଶ୍ୟକ

**ପ୍ରଶ୍ନକର୍ତ୍ତା :** ଜ୍ଞାନ ନେବା ପରେ ମଧ୍ୟ 'ମୁଁ ଶୁଦ୍ଧାତ୍ମା ଅଟେ' ଏହା ଧ୍ୟାନରେ ଆଣିବାକୁ ପଡୁଛି, ତାହା ଟିକେ କଠିନ ଅଟେ ।

**ଦାଦାଶ୍ରୀ :** ନା, ଏପରି ହେବା ଉଚିତ ନୁହେଁ । ଧ୍ୟାନରେ ରଖିବାକୁ ପଡ଼ିବ ନାହିଁ ଆପେ ଆପେ ରହିବ । ତେବେ ଏଥିପାଇଁ କ'ଣ କରିବାକୁ ପଡ଼ିବ ? ଏଥିପାଇଁ ମୋ ନିକଟକୁ ଆସୁଥିବାକୁ ପଡ଼ିବ । ଯେଉଁ ପାଣି ଛିଞ୍ଚିବା କଥା ତାହା ହୋଇପାରୁ ନାହିଁ ସେଥିପାଇଁ ଏସବୁ ଅସୁବିଧା ହେଉଛି । ଯଦି ତୁମେ ବ୍ୟବସାୟରେ ଧ୍ୟାନ ନ ଦେବ ତେବେ ବ୍ୟବସାୟର କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** ଡାଉନ୍(ଧୀମା) ହୋଇଯିବ ।

**ଦାଦାଶ୍ରୀ :** ହଁ, ଠିକ୍ ସେହିପରି ଏଥିରେ ମଧ୍ୟ । ଯଦି ଜ୍ଞାନ ପ୍ରାପ୍ତ କରିଛ ତେବେ ସେଥିରେ ପାଣି ଛିଞ୍ଚିବାକୁ ପଡ଼ିବ, ତେବେ ଯାଇ ଚାରାଟି ବଡ଼ ହେବ । ଛୋଟ ଗଛରେ ମଧ୍ୟ ପାଣି ଦେବାକୁ ପଡ଼ିଥାଏ । କେବେ କେବେ ମାସେ ଦୁଇମାସରେ କିଛି ପାଣି ଦେବା ଉଚିତ୍ ।

**ପ୍ରଶ୍ନକର୍ତ୍ତା :** ଘରେ ଛିଞ୍ଚୁଛୁ ନା ।

**ଦାଦାଶ୍ରୀ :**ନା, କିନ୍ତୁ ଘରେ କଲେ ଚଳିବ ନାହିଁ । ଏଭଳି କେଉଁଠି ଚଳୁଥିବ ? ସାମ୍ନା ସାମ୍ନି । ଜ୍ଞାନୀ ଏଠାକୁ ଆସିଛନ୍ତି ଆଉ ତୁମକୁ ଏହାର ମୂଲ୍ୟ ହିଁ ନାହିଁ...ସ୍କୁଲ ଯାଇଥିଲ ନା ନାହିଁ ? କେତେ ବର୍ଷ ଯାଇଥିଲ ?

**ପ୍ରଶ୍ନକର୍ତ୍ତା :** ଦଶ ବର୍ଷ ।

**ଦାଦାଶ୍ରୀ :** ତେବେ ସେଠାରେ କ'ଣ ଶିଖିଲ ? ଭାଷା ! ଏହି ଇଂରାଜୀ ଭାଷା ପାଇଁ ଦଶ ବର୍ଷ ବାହାର କଲ ତେବେ ଏଠି ମୋ ପାଖରେ ମାତ୍ର ଛଅ ମାସ କହୁଛି । ଛଅମାସ ମୋର ଅନୁଗମନ କରିବ ତେବେ କାମ ହୋଇଯିବ ।

## 'ନିଶ୍ଚୟ' ଷ୍ଟ୍ରଙ୍ଗ(ପକ୍କା) ତେବେ ଅନ୍ତରାୟ ବ୍ରେକ୍

**ପ୍ରଶ୍ନକର୍ତ୍ତା :** ବାହାରର ପ୍ରୋଗ୍ରାମ୍ (କର୍ମସୂଚୀ) ହୋଇଯାଇଛି, ଏଥିପାଇଁ ଆସିବାରେ ସମସ୍ୟା ହେବ ।

**ଦାଦାଶ୍ରୀ :** ଯଦି ତୁମର ଭାବ ଷ୍ଟ୍ରଙ୍ଗ୍ ଥିବ ତେବେ ଅନ୍ତରାୟ କଟିଯିବ । ଭିତରେ ନିଜର ଭାବ ଷ୍ଟ୍ରଙ୍ଗ୍ ଅଛି ନା ଢିଲା ଅଛି ତାହା ଦେଖି ନେବାକୁ ହେବ ।

## ସଂସାରରେ ଲାଭର ଗ୍ୟାରେଣ୍ଟୀ, ସତ୍‌ସଙ୍ଗ ଦ୍ୱାରା

ମୋ ନିକଟକୁ ସବୁ ବେପାରୀ ଆସନ୍ତି ନା, ଆଉ ସେମାନେ ମଧ୍ୟ ଏପରି

ଯେଉଁମାନେ ଯଦି ଦୋକାନକୁ ଘଣ୍ଟାଏ ବିଳମ୍ବରେ ଯିବେ ତେବେ ପାଞ୍ଚଶହ-ହଜାର ଟଙ୍କା କ୍ଷତି ହୋଇଯାଏ । ମୁଁ ସେମାନଙ୍କୁ କହିଲି, 'ଏଠାକୁ ଯେତେ ସମୟ ପାଇଁ ଆସୁଛ ସେତିକି ସମୟ ପାଇଁ କିଛି କ୍ଷତି ହେବ ନାହିଁ କିନ୍ତୁ ଯଦି ରାସ୍ତାରେ ଅଧା ଘଣ୍ଟା କୌଣସି ଦୋକାନ ପାଖରେ ଠିଆ ହୋଇଯିବ ତେବେ ତୁମର କ୍ଷତି ହେବ । ଏଠାକୁ ଆସିବ ତେବେ ଜିମ୍ମେଦାରୀ(ଦାୟୀତ୍ୱଭାର) ମୋର କାହିଁକିନା ଏ ସତ୍‌ସଙ୍ଗରେ ମୋର କୌଣସି ନେବା ଦେବାର ନାହିଁ । ମାନେ ତୁମେ ଏଠାକୁ ନିଜର ଆତ୍ମା ପାଇଁ ଆସିଛ ଏଥିପାଇଁ କହୁଛି, ଏଠାକୁ ଆସିଲେ ତୁମର କୌଣସି ପ୍ରକାର କ୍ଷତି ହେବ ନାହିଁ ।

## ଦାଦାଙ୍କ ସତ୍‌ସଙ୍ଗର ଅଲୌକିକତା

ଯଦି କର୍ମର ଉଦୟ ବହୁତ ଭାରୀ ଆସେ ତେବେ ତୁମକୁ ବୁଝିନେବାକୁ ହେବ ଯେ ଉଦୟ ଭାରୀ ଅଛି ଏଣୁ ଶାନ୍ତ ରହିବାର ଅଛି ଏବଂ ପୁଣି ତାହାକୁ ଥଣ୍ଡାକରି ସତ୍‌ସଙ୍ଗରେ ହିଁ ବସିରହିବ । ଏହିପରି ଚାଲିବ । କିଭଳି କିଭଳି କର୍ମର ଉଦୟ ଆସିବ ତାହା କହି ହେବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଜାଗୃତି ବିଶେଷ ରୂପରେ ବଢ଼ାଇବା ପାଇଁ ଉପାୟ କ'ଣ ?

**ଦାଦାଶ୍ରୀ :** ସତସଙ୍ଗରେ ହିଁ ପଡ଼ି ରହିବ, ଏହି ଉପାୟ ।

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ପାଖରେ ଛଅ ମାସ ବସିବୁ ତେବେ ତା'ଦ୍ୱାରା ସ୍ଥୁଳ ପରିବର୍ତ୍ତନ ହେବ, ପୁଣି ସୂକ୍ଷ୍ମ ପରିବର୍ତ୍ତନ ହେବ, ଏମିତି କହୁଛନ୍ତି ?

**ଦାଦାଶ୍ରୀ :** ହଁ, କେବଳ ବସି ରହିଲେ ହିଁ ପରିବର୍ତ୍ତନ ହୋଇଚାଲିବ । ଏଣୁ ଏଠାରେ ପରିଚୟରେ ରହିବା ଉଚିତ୍ । ଦୁଇ ଘଣ୍ଟା, ତିନି ଘଣ୍ଟା, ପାଞ୍ଚ ଘଣ୍ଟା । ଯେତେ ଜମା କରିବ ସେତେ ଲାଭ । ଲୋକମାନେ ଜ୍ଞାନ ନେବା ପରେ ଏପରି ଭାବନ୍ତି ଯେ ଆମକୁ ତ' ଏବେ କିଛି କରିବାର ହିଁ ନାହିଁ । କିନ୍ତୁ ଏପରି ନୁହେଁ, କାରଣ ଏ ପର୍ଯ୍ୟନ୍ତ ପରିବର୍ତ୍ତନ ତ' ହୋଇନାହିଁ !

## ରୁହ, ଜ୍ଞାନୀଙ୍କ ସାମୀପ୍ୟରେ

**ପ୍ରଶ୍ନକର୍ତ୍ତା :** ପୂର୍ଣ୍ଣପଦ ପ୍ରାପ୍ତି ପାଇଁ ମହାତ୍ମାମାନଙ୍କୁ, କ'ଣ ଗରଜ ରଖିବା ଉଚିତ୍ ?

**ଦାଦାଶ୍ରୀ :** ଯେତେ ସମ୍ଭବ ସେତେ ଜ୍ଞାନୀଙ୍କ ନିକଟରେ ଜୀବନ ବିତାଇବା ଉଚିତ୍ ସେହି ଗରଜ, ଆଉ କୌଣସି ଗରଜ ନୁହେଁ । ରାତି-ଦିନ, ସବୁବେଳେ ଦାଦାଙ୍କ ପାଖେ ପାଖେ ରହିବି । ତାଙ୍କ(ଆତ୍ମଜ୍ଞାନୀଙ୍କ) ସାମୀପ୍ୟରେ ରହିବି ।

ଏଠାରେ 'ସତ୍‌ସଙ୍ଗ'ରେ ବସି ବସି କର୍ମର ବୋଝ କମ୍ ହୋଇଚାଲେ । କିନ୍ତୁ ବାହାରେ ତ' କେବଳ କର୍ମର ବୋଝ ବଢୁ ହିଁ ଥାଏ । ସେଠି ତ କେବଳ ସମସ୍ୟା ହିଁ ଅଛି । ମୁଁ ତୁମକୁ ଗ୍ୟାରେଣ୍ଟି ଦେଉଛି ଯେ ଯେତେ ସମୟ ଏଠାରେ ସତ୍‌ସଙ୍ଗରେ ବସିବ ସେତେ ସମୟ ପର୍ଯ୍ୟନ୍ତ ତୁମର କାମଧନ୍ଦାରେ କେବେ ବି କ୍ଷତି ହେବ ନାହିଁ । ଆଉ ହିସାବ କରି ଦେଖିବ ତେବେ ଜାଣିବ ଯେ ଲାଭ ହିଁ ହୋଇଛି । ଏହି ସତ୍‌ସଙ୍ଗ, ଏହା କ'ଣ କୌଣସି ଏମିତି-ସେମିତି ସତ୍‌ସଙ୍ଗ ? କେବଳ ଆତ୍ମା ପାଇଁ ଯିଏ ସମୟ ବାହାର କରେ ତା'କୁ ସଂସାରରେ କିପରି କ୍ଷତି ହେବ ? କେବଳ ଲାଭ ହିଁ ହୁଏ । କିନ୍ତୁ ଏପରି ବୁଝାପଡ଼େ, ତେବେ କାମ ହେବ ନା ? ଏହି ସତ୍‌ସଙ୍ଗରେ ବସିଲେ ଅର୍ଥାତ ଆସିବା କେବେ ବି ବେକାର ଯିବ ନାହିଁ । ଏ ତ' କେତେ ସୁନ୍ଦର ସମୟ ଆସିଛି ! ଭଗବାନଙ୍କ ସମୟରେ ସତ୍‌ସଙ୍ଗକୁ ଯିବାକୁ ହେଲେ ପାଦରେ ଚାଲି ଚାଲି ଯିବାକୁ ପଡୁଥିଲା । ଆଉ ଆଜି ତ' ବସ୍ ବା ଟ୍ରେନ୍‌ରେ ବସିଗଲେ କି ତୁରନ୍ତ ହିଁ ସତ୍‌ସଙ୍ଗକୁ ଆସି ଯାଇ ହୁଏ !!

## ପ୍ରତ୍ୟକ୍ଷ ସତ୍‌ସଙ୍ଗ ତାହା ସର୍ବଶ୍ରେଷ୍ଠ

ଏଠାରେ ବସିରହି ଯଦି କିଛି ବି ନ କର ତଥାପି ଭିତରେ ପରିବର୍ତ୍ତନ ହୋଇଚାଲିବ କାରଣ ସତ୍‌ସଙ୍ଗ ଅଟେ, ସତ୍ ଅର୍ଥାତ୍ ଆତ୍ମା, ଆତ୍ମାର ସଙ୍ଗ ! ଏହି ସତ୍ ପ୍ରକଟ ହୋଇ ସାରିଛି ଏବଂ ଆମେ ତାଙ୍କରି ସଙ୍ଗରେ ବସିଛୁ । ଏହାକୁ ଅନ୍ତିମ ପ୍ରକାରର ସତ୍‌ସଙ୍ଗ କୁହାଯାଏ ।

ସତ୍‌ସଙ୍ଗରେ ପଡ଼ି ରହିଲେ ଏସବୁ ଖାଲି ହୋଇଯିବ କାରଣ ସାଥିରେ ରହିବା ଦ୍ୱାରା ଆମକୁ(ଜ୍ଞାନୀଙ୍କୁ) ଦେଖିବା ଦ୍ୱାରା ଆମର ଡାଇରେକ୍ଟ (ସିଧାସଳଖ) ଶକ୍ତି ପ୍ରାପ୍ତ ହୋଇଥାଏ, ଏହା ଦ୍ୱାରା ଜାଗୃତି ଏକ୍‌ଦମ୍ ବଢ଼ିଯାଏ ! ଏମିତି କିଛି କରିବା ଉଚିତ୍ ଯାହା ଦ୍ୱାରା ସତ୍‌ସଙ୍ଗରେ ରହିପାରିବା । ଏହି ସତ୍‌ସଙ୍ଗର ସାଥିରେ ରହିବା ତେବେ କାମ ହୋଇଯିବ ।

କାମ କାଢ଼ି ନିଅ ମାନେ କ'ଣ ? ଯେତେ ସମ୍ଭବ ସେତେ ଅଧିକ ଦର୍ଶନ କର । ଯେତେ ସମ୍ଭବ ସେତେ ସତ୍‌ସଙ୍ଗରେ ସାମ୍‌ନା-ସାମ୍‌ନି ଲାଭ ନେଇଯାଅ, ପ୍ରତ୍ୟକ୍ଷ ସତ୍‌ସଙ୍ଗ । ନ ହୋଇ ପାରିଲେ ଶେଷରେ ସେତିକି ଅନୁତାପ ହେବା ଉଚିତ୍ ! ଜ୍ଞାନୀପୁରୁଷଙ୍କ ଦର୍ଶନ କରିବ ଏବଂ ତାଙ୍କ ପାଖରେ ସତ୍‌ସଙ୍ଗରେ ବସି ରହିବ ।

## ୧୪. ଦାଦାଙ୍କ ପୁସ୍ତକ ତଥା ମାଗାଜିନ୍(ପତ୍ରିକା)ର ମହତ୍ତ୍ୱ

### ଆପ୍ତବାଣୀ, କିପରି କ୍ରିୟାକାରୀ !

ଏହା 'ଜ୍ଞାନୀପୁରୁଷ'ଙ୍କ ବାଣୀ ଅଟେ ଆଉ ସତେଜ ମଧ୍ୟ । ଏହାର ପର୍ଯ୍ୟାୟଗୁଡ଼ିକ ବର୍ତ୍ତମାନର, ଏଣୁ ଏହାକୁ ପଢ଼ିବା ମାତ୍ରେ ହିଁ ନିଜର ସମସ୍ତ ପର୍ଯ୍ୟାୟ ବଦଳି ଚାଲେ, ଆଉ ସେହି ଅନୁସାରେ ଆନନ୍ଦ ଉତ୍ପନ୍ନ ହେବାକୁ ଲାଗେ । କାରଣ ଏହା ବୀତରାଗୀ ବାଣୀ ଅଟେ । *ରାଗ୍-ଦ୍ୱେଷ* ରହିତ ବାଣୀ ହେଲେ ହିଁ କାମରେ ଆସେ ଅନ୍ୟଥା କୌଣସି କାମରେ ଲାଗେ ନାହିଁ । ଭଗବାନଙ୍କ ବାଣୀ ବୀତରାଗ ଥିଲା, ସେଥିପାଇଁ ତାହାର ପ୍ରଭାବ ଆଜିପର୍ଯ୍ୟନ୍ତ ଚାଲିଛି । ଏଣୁ 'ଜ୍ଞାନୀପୁରୁଷ'ଙ୍କ ବାଣୀର ମଧ୍ୟ ପ୍ରଭାବ ପଡ଼େ । ବୀତରାଗ ବାଣୀ ବ୍ୟତୀତ ଅନ୍ୟ କୌଣସି ଉପାୟ ନାହିଁ ।

### ଯଦି ପ୍ରତ୍ୟକ୍ଷ ପରିଚୟ ନ ମିଳେ

**ପ୍ରଶ୍ନକର୍ତ୍ତା :** ଦାଦା, ଯଦି ପରିଚୟରେ ନ ରହିପାରୁ ତେବେ ପୁସ୍ତକ କେତେ ସହାୟତା କରେ ?

**ଦାଦାଶ୍ରୀ :** ସବୁକିଛି ସହାୟତା କରେ । ଏପରିକି, ଦାଦାଙ୍କ ପ୍ରତ୍ୟେକ ଜିନିଷ,ଦାଦାଙ୍କର ସେ ଶବ୍ଦ(ପୁସ୍ତକରେ), ଦାଦାଙ୍କର *ଆଶୟ*(ପରିକଳ୍ପନା,ବୁଦ୍ଧିର design) ଅର୍ଥାତ ସବୁ ଜିନିଷ ହେଲ୍ପ(ସାହାଯ୍ୟ) କରେ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ସାକ୍ଷାତ ପରିଚୟ ଆଉ ଏଥିରେ ପ୍ରଭେଦ ରହିବ ନା ?

**ଦାଦାଶ୍ରୀ :**ଯଦି ପ୍ରଭେଦ ଦେଖିବା ପାଇଁ ଯିବ ତେବେ ସବୁଥିରେ ପ୍ରଭେଦ ଅଛି । ଏଥିପାଇଁ ଆମକୁ ତ' ଯେଉଁ ସମୟରେ ଯାହା ଆସିଲା ତାହା କରିବାର ଅଛି । 'ଦାଦା' ନ ଥିବେ ତେବେ କ'ଣ କରିବ ? ଦାଦାଜୀଙ୍କର ପୁସ୍ତକ ଅଛି, ତାହାକୁ ପଢ଼ିବ । ପୁସ୍ତକରେ ଦାଦାଜୀ ହିଁ ଅଛନ୍ତି ନା ? ଅନ୍ୟଥା ଆଖି ବନ୍ଦ କରିବା ମାତ୍ରେ ଦାଦାଜୀ ଦେଖା ଦେବେ ।

## ୧୫. ପାଞ୍ଚ ଆଜ୍ଞା ଦ୍ୱାରା ଜଗତ ନିର୍ଦୋଷ

'ସ୍ୱରୂପଜ୍ଞାନ' ବିନା ତ'ଭୁଲ ଦେଖା ଯାଏ ନାହିଁ । କାରଣ 'ମୁଁ ହିଁ ଚନ୍ଦୁଭାଇ ଅଟେ ଆଉ ମୋ ଠାରେ କୌଣସି ଦୋଷ ନାହିଁ, ମୁଁ ଚାଲାକ-ସମଝଦାର ଅଟେ'

ଏପରି ଥାଏ ଏବଂ 'ସ୍ୱରୂପଜ୍ଞାନ' ପ୍ରାପ୍ତି ପରେ ତୁମେ ନିଷ୍ପକ୍ଷପାତୀ ହେଲ, ମନ-ବଚନ-କାୟା ଉପରେ ତୁମର ପକ୍ଷପାତ ରହିଲା ନାହିଁ । ଏଣୁ ନିଜର ଭୁଲ ନିଜକୁ ଦେଖାଯାଏ ।

ଯାହାକୁ ନିଜର ଭୁଲ ଜଣାପଡ଼ିବ, ଯାହାକୁ ପ୍ରତିକ୍ଷଣ ନିଜର ଭୁଲ ଦେଖାଯାଏ, ଯେଉଁଠି-ଯେଉଁଠି ଭୁଲ ହୁଏ ସେଠାରେ ଭୁଲ ଦେଖାଯାଏ ସେ ନିଜେ 'ପରମାତ୍ମା' ସ୍ୱରୂପ ହୋଇଗଲା । 'ମୁଁ ଚନ୍ଦୁଭାଇ ନୁହେଁ, ମୁଁ ଶୁଦ୍ଧାତ୍ମା ଅଟେ' ଏହା ବୁଝିସାରିବା ପରେ ହିଁ ନିଷ୍ପକ୍ଷପାତୀ ହୋଇହେବ । କାହାର କିଞ୍ଚିତ୍ ମାତ୍ର ମଧ୍ୟ ଦୋଷ ଦେଖାଯାଏ ନାହିଁ ଏବଂ ନିଜର ସବୁଦୋଷ ଦେଖାଯାଏ, ତେବେ ଯାଇ ନିଜର କାମ ପୂରା ହେଲା କୁହାଯିବ । ନିଜର ଦୋଷ ଦେଖିବା ଆରମ୍ଭ ହୁଏ, ସେବେ ଠାରୁ ମୋ ଦ୍ୱାରା ଦିଆ ଯାଇଥିବା 'ଜ୍ଞାନ' ଫଳୀଭୂତ ହେବା ଆରମ୍ଭ ହୋଇଯାଏ । ଯେତେବେଳେ ନିଜର ଦୋଷ ଦେଖାଯାଏ, ସେତେବେଳେ ଅନ୍ୟର ଦୋଷ ଦେଖାଯାଏ ନାହିଁ । ଅନ୍ୟର ଦୋଷ ଦେଖାଯାଏ ତେବେ ତାହା ବହୁତ ବଡ଼ ଅପରାଧ କୁହାଯାଏ ।

ଏହି ନିର୍ଦ୍ଦୋଷ ଜଗତରେ ଯେଉଁଠି କେହି ଦୋଷୀ ହିଁ ନୁହେଁ, ସେଠାରେ କାହାକୁ ଦୋଷ ଦେବା ? ଯେ ପର୍ଯ୍ୟନ୍ତ ଦୋଷ ଅଛି, ସେ ପର୍ଯ୍ୟନ୍ତ ଅହଂକାର ନିର୍ମୂଳ ହେବ ନାହିଁ । ଯେ ପର୍ଯ୍ୟନ୍ତ ଅହଂକାର ନିର୍ମୂଳ ହେବ ନାହିଁ, ସେ ପର୍ଯ୍ୟନ୍ତ ଦୋଷ ଧୋଇବାକୁ ହେବ ।

ଏବେ ବି ଯଦି କେହି ଦୋଷିତ ଦେଖାଯାଉଛି, ତେବେ ତାହା ନିଜର ଭୁଲ । କେବେ ନା କେବେ ତ' ନିର୍ଦ୍ଦୋଷ ଦେଖିବାକୁ ପଡ଼ିବ ନା ? ସବୁ ଆମର ହିଁ ହିସାବ ଅଟେ । ଏତିକି ସଂକ୍ଷେପରେ ବୁଝିଗଲେ ବି ବହୁତ କାମରେ ଆସିବ ।

## ଆଜ୍ଞାପାଳନ ଦ୍ୱାରା ବଢ଼େ ନିର୍ଦ୍ଦୋଷ ଦୃଷ୍ଟି

ମୋତେ ଜଗତ ନିର୍ଦ୍ଦୋଷ ଦେଖାଯାଏ । ତୁମକୁ ଏପରି ଦୃଷ୍ଟି ଆସିବ, ତେବେ ଯାଇ ଏହି ପଜଲ୍(ସମସ୍ୟା)ର ସମାଧାନ ହେବ । ମୁଁ ତୁମକୁ ଏପରି ପ୍ରକାଶ ଦେବି ଏବଂ ଏତେ ପାପ ଧୋଇଦେବି ଯାହାଦ୍ୱାରା ତୁମର ପ୍ରକାଶ ରହିବ ଏବଂ ତୁମକୁ ନିର୍ଦ୍ଦୋଷ ଦେଖାଯିବ । ଆଉ ଏହା ସହିତ ପାଞ୍ଚଟି ଆଜ୍ଞା ଦେବି । ସେହି ପାଞ୍ଚଟି ଆଜ୍ଞାରେ ରହିବ ତେବେ ଦିଆଯାଇଥିବା ଜ୍ଞାନକୁ ସେମାନେ ତିଳେ ମାତ୍ର ମଧ୍ୟ ନଷ୍ଟ ହେବାକୁ ଦେବେ ନାହିଁ ।

## ସେବେଠାରୁ ହେଲା ସମକିତ !

ନିଜର ଦୋଷ ଦେଖାଯାଏ, ସେବେଠାରୁ ସମକିତ ହେଲା ଏପରି କୁହାଯିବ । ନିଜର ଦୋଷ ଦେଖାଯାଏ ସେବେଠୁ ବୁଝିନେବ ଯେ ତୁମେ ଜାଗୃତ ହେଲ । ତା' ନହେଲେ ସମସ୍ତେ ନିଦରେ ହିଁ ଚାଲୁଛନ୍ତି । ଦୋଷ ଶେଷ ହେଲା କି ନା ସେ ବିଷୟରେ ଅଧିକ ଚିନ୍ତା କରିବା ଦରକାର ନାହିଁ, କିନ୍ତୁ ମୁଖ୍ୟ ଆବଶ୍ୟକତା ହେଉଛି ଜାଗୃତି । ଜାଗୃତି ହେବା ପରେ ନୂଆ ଦୋଷ ହୁଏ ନାହିଁ ଆଉ ଯାହା ପୁରୁଣା ଦୋଷଗୁଡ଼ିକ ଅଛି ତାହା ସରି ସରି ଯାଏ । ଆମକୁ ସେହି ଦୋଷଗୁଡ଼ିକୁ ଦେଖିବାର ଅଛି ଯେ କିଭଳି ଦୋଷ ହେଉଛି ।

## ଯେତେ ଦୋଷ, ସେତେ ପ୍ରତିକ୍ରମଣ ଦରକାର

ଅନନ୍ତ ଦୋଷର ଭଣ୍ଡାର ଅଛି ତେବେ ସେତିକି ହିଁ ପ୍ରତିକ୍ରମଣ କରିବାକୁ ପଡ଼ିବ । ଯେତେ ଦୋଷ ଭରିକି ଆଣିଛ, ତାହା ତୁମକୁ ଦେଖାଯିବ । ଜ୍ଞାନୀପୁରୁଷ ଜ୍ଞାନ ଦେବା ପରେ ଦୋଷ ଦେଖାଯାଏ ଅନ୍ୟଥା ନିଜର ଦୋଷ ଦେଖାଯାଏ ନାହିଁ, ଏହାର ନାମ ଅଜ୍ଞାନତା । ନିଜର ଗୋଟିଏ ବି ଦୋଷ ଦେଖାଯାଏ ନାହିଁ ଏବଂ ଅନ୍ୟ କାହାର ଦେଖିବାର ଅଛି ତ' ବହୁତଗୁଡ଼ିଏ ଦେଖାଯାଏ, ଏହାର ନାମ ମିଥ୍ୟାତ୍ୱ ।

## ଦୃଷ୍ଟି ନିଜର ଦୋଷଗୁଡ଼ିକ ପ୍ରତି...

ଏହି ଜ୍ଞାନ ନେବା ପରେ ଭିତରେ ଖରାପ ବିଚାର ଆସିଲେ, ସେଗୁଡ଼ିକୁ ଦେଖ ଆଉ ଭଲ ବିଚାର ଆସିଲେ ମଧ୍ୟ ସେଗୁଡ଼ିକୁ ଦେଖ । ଭଲ ପ୍ରତି *ରାଗ୍* କିମ୍ବା ଖରାପ ପ୍ରତି *ଦ୍ୱେଷ* ନ ହେବା ଉଚିତ୍ । ଭଲ-ଖରାପ ଦେଖିବା ଆମର ଦରକାର ନାହିଁ । କାରଣ ମୂଳତଃ ସତ୍ତା ହିଁ ଆମ ଅଧୀନରେ ନାହିଁ । ତେଣୁ ଜ୍ଞାନୀ କ'ଣ ଦେଖନ୍ତି ? ସମସ୍ତ ଜଗତକୁ ନିର୍ଦ୍ଦୋଷ ଦେଖନ୍ତି । କାରଣ ସବୁ 'ଡ଼ିସ୍‌ଚାର୍ଜ' ଅଟେ । ସେଥିରେ ସେ ବିଚରାର କ'ଣ ଦୋଷ ? ତୁମକୁ କେହି ଗାଳି କରେ ତାହା 'ଡ଼ିସ୍‌ଚାର୍ଜ' । 'ବୋସ୍'(ଉପର ଅଧିକାରୀ) ତୁମକୁ ସମସ୍ୟାରେ ପକାଇବା ମଧ୍ୟ 'ଡ଼ିସ୍‌ଚାର୍ଜ' ହିଁ ଅଟେ । 'ବୋସ୍' ତ' ନିମିତ୍ତ ଅଟେ । ଜଗତରେ କାହାରି ଦୋଷ ନାହିଁ । ଯେଉଁ ଦୋଷ ଦେଖାଯାଉଛି, ତାହା ନିଜର ହିଁ ଭୁଲ ଅଟେ, ଆଉ ତାହା ହିଁ 'ବ୍ଲଣ୍ଡର୍ସ(ନିର୍ବୋଧତା)' ଏବଂ ତାହା ଦ୍ୱାରା ଏହି ଜଗତ କାଏମ୍(ଜୀବିତ) ଅଛି । ଦୋଷ ଦେଖିବା ଦ୍ୱାରା, ଓଲଟା ଦେଖିବା ଦ୍ୱାରା ହିଁ ବୈର(ଶତ୍ରୁତା) ବନ୍ଧାହୁଏ ।



# ଏଡ଼ଜଷ୍ଟ ଏଭ୍ରିହ୍ୱେୟାର

## ହଜମ କର ଗୋଟିଏ ହିଁ ଶବ୍ଦ

'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ଏତିକ ଶବ୍ଦକୁ ଯଦି ତୁମେ ଜୀବନରେ ଆପଣେଇ ନେବ ତେବେ ବହୁତ ହୋଇଗଲା । ତୁମକୁ ଆପେ ଆପେ ଶାନ୍ତି ପ୍ରାପ୍ତ ହେବ । ଏହି କଳିଯୁଗର ଏପରି ଭୟଙ୍କର କାଳରେ ଯଦି ଏଡ଼ଜଷ୍ଟ ନ ହେବ, ତେବେ ଖତମ ହୋଇଯିବ !

ସଂସାରରେ ଆଉ କିଛି ନଆସିଲେ ମଧ୍ୟ ଚଳିବ କିନ୍ତୁ ଏଡ଼ଜଷ୍ଟ ହେବା ତ' ଆସୁଥିବା ହିଁ ଦରକାର । ସାମ୍ନାବାଲା 'ଡ଼ିସ୍ଏଡ଼ଜଷ୍ଟ' ହେଲେ ହେଉଥାଉ, କିନ୍ତୁ ତୁମେ ଯଦି ଏଡ଼ଜଷ୍ଟ ହୋଇଚାଲିବ ତେବେ ସଂସାର-ସାଗର ପାରି ହୋଇଯିବ । ଯିଏ ଅନ୍ୟମାନଙ୍କ ସହ ଖାପଖୁଆଇ ଚଳି ପାରୁଥିବ, ତା'ର କୌଣସି ଦୁଃଖ ରୁହେ ନାହିଁ । 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' । ପ୍ରତ୍ୟେକଙ୍କ ସହିତ ଏଡ଼ଜଷ୍ଟମେଣ୍ଟ ହୋଇଯିବା ହିଁ ସବୁଠାରୁ ବଡ଼ ଧର୍ମ । ଏହି କାଳରେ ତ' ସମସ୍ତଙ୍କର ଭିନ୍ନ ଭିନ୍ନ ପ୍ରକୃତି, ଏଣୁ ଏଡ଼ଜଷ୍ଟ ନହେଲେ କିପରି ଚଳିବ ?

ଏହି ଆଇସ୍କ୍ରୀମ୍ ତୁମକୁ ତାହାଠାରୁ ଦୂରରେ ରହିବାକୁ କୁହେ ନାହିଁ । ତୁମକୁ ଯଦି ଖାଇବାର ନାହିଁ ତେବେ ନ ଖାଅ । କିନ୍ତୁ ବୟସ୍କ ଲୋକମାନେ ସର୍ବଦା ତାହା ଉପରେ ବିରକ୍ତ ହୁଅନ୍ତି । ଏହି ମତଭେଦ ତ' ଯୁଗ ପରିବର୍ତ୍ତନ ପାଇଁ ହେଉଛି । ଏହି ପିଲାମାନେ ତ ସମୟାନୁସାରେ ଚାଲିବେ ।

ମୁଁ କ'ଣ କହୁଛି କି ସମୟ ସାଥିରେ ଏଡ଼ଜଷ୍ଟ ହୋଇଯାଅ । ପୁଅ ନୂଆ ଟୋପିଟିଏ ପିନ୍ଧି ଆସିଥାଏ, ତେବେ ଏମିତି କୁହନାହିଁ ଯେ 'ଏପରି ଟୋପି କେଉଁଠୁ ନେଇଆସିଲୁ ?' ବରଂ ଏଡ଼ଜଷ୍ଟ ହୋଇଯାଇ କୁହ ଯେ 'ଏତେ ଭଲ ଟୋପି କେଉଁଠୁ ଆଣିଲୁ ? କେତେ ଟଙ୍କା ଦେଇ ଆଣିଲୁ ? ବହୁତ ଶସ୍ତାରେ ପାଇଛୁ ?' ଏହିପରି ଏଡ଼ଜଷ୍ଟ ହୋଇଯାଅ ।

ଆମର ଧର୍ମ କ'ଣ କୁହେ କି ଅସୁବିଧାରେ ସୁବିଧା ଦେଖ । ରାତିରେ ମୋ ମନରେ ବିଚାର ଆସିଲା କି, 'ଏହି ଚାଦରଟି ମଇଳା ହୋଇଯାଇଛି' । କିନ୍ତୁ ଏଡ଼ଜଷ୍ଟମେଣ୍ଟ ହୋଇଯିବାରୁ ଏତେ ନରମ ଅନୁଭବ ହେଲା ଯେ, ଆଉ ସେ କଥା ପଚାର ନାହିଁ । ପଞ୍ଚେନ୍ଦ୍ରିୟ ଜ୍ଞାନ ଅସୁବିଧା ଦେଖାଏ ଏବଂ ଆତ୍ମଜ୍ଞାନ ସୁବିଧା ଦେଖାଏ । ଏଣୁ ଆତ୍ମାରେ ରୁହ ।

ଅନ୍ୟକୁ ଭଲ ମନ୍ଦ କହିବାରୁ ସେମାନେ ଆମକୁ କଷ୍ଟ ଦିଅନ୍ତି । ଆମକୁ ତ ଦୁହିଁଙ୍କୁ ସମାନ କରିଦେବାକୁ ପଡ଼ିବ । ଜଣକୁ 'ଭଲ' କହିବା ଅର୍ଥାତ ଅନ୍ୟ ଜଣକ 'ଖରାପ' ହେଲା । ଏଣୁ ସେ ଆମକୁ କଷ୍ଟ ଦିଏ । କେହି ସତ କହୁ ବା ମିଛ କହୁ ତା' ସହିତ ଏଡ଼ଜଷ୍ଟ ହୋଇଯାଅ । ଯଦି ଆମକୁ କେହି କୁହେ ଯେ 'ତୁମର ବୁଦ୍ଧି ନାହିଁ । ତେବେ ଆମେ ସଙ୍ଗେ ସଙ୍ଗେ ତା' ସହିତ ଏଡ଼ଜଷ୍ଟ ହୋଇଯିବା ଏବଂ କହିବା ଯେ 'ତାହା ତ' ପ୍ରଥମରୁ ନଥିଲା । ଆଜି ତୁ ଖୋଜିଲେ କେଉଁଠୁ ପାଇବୁ ? ତୋତେ ତ' ଆଜି ଜଣାପଡ଼ିଲା, ମାତ୍ର ମୁଁ ତ' ପିଲା ଦିନରୁ ହିଁ ଜାଣିଛି ।' ଯଦି ଏପରି କହିବା ତେବେ ସମସ୍ୟାର ସମାଧାନ ହୋଇଯିବ ନା ? ଆଉ ସେ ଆମଠାରେ ବୁଦ୍ଧି ଖୋଜିବ ହିଁ ନାହିଁ ।

## ପତ୍ନୀ ସହିତ ଏଡ଼ଜଷ୍ଟମେଣ୍ଟ

ଆମର କୌଣସି କାରଣବଶତଃ ବିଳମ୍ବ ହୋଇଗଲା, ଆଉ ପତ୍ନୀ କିଛି ୟାତ୍ରୁ ସ୍ୟାତ୍ରୁ କହିବାକୁ ଲାଗେ, 'ଏତେ ଡେରିରେ ଆସୁଛ ? ଏପରି ଚଳିବ ନାହିଁ ।' ଏବଂ ତା'ର ମୁଣ୍ଡ ଖରାପ ହୋଇଯାଏ, ତେବେ ତୁମେ କହିବ ଯେ, 'ହଁ, ତୋ କଥା ସତ, ତୁ ଯଦି କହିବୁ ଫେରିଯିବି, ଆଉ ଯଦି କହିବୁ ଭିତରେ ଆସି ବସିବି ।' ଏହା ଶୁଣି ସେ କହିବ 'ନା, ଯାଅନି । ଏଇଠି ଚୁପ୍ ଚାପ୍ ଶୋଇପଡ଼' । କିନ୍ତୁ ପୁଣି ପଚାର 'ତୁ କହିଲେ ଖାଇବି ନଚେତ୍ ଶୋଇପଡ଼ିବି ।' ସେ କହିବ 'ନା, ଖାଇନିଅ ।' ତେବେ ତୁମକୁ ତା' କଥା ମାନି ଖାଇ ନେବା ଉଚିତ । ଅର୍ଥାତ ଏଡ଼ଜଷ୍ଟ ହୋଇଗଲ । ପରେ ସକାଳେ ଫାଷ୍ଟକ୍ଲାସ୍ ଚା' ଦେବ ଆଉ ଯଦି ଧମକେଇବ ତେବେ ସେ ମୁହଁ ଫୁଲାଇ ଚା' ଦେବ ଆଉ ଏହିପରି ତିନି ଦିନ ପର୍ଯ୍ୟନ୍ତ ଚାଲିବ ।

## ଭୋଜନରେ ଏଡ଼ଜଷ୍ଟମେଣ୍ଟ

ଆଦର୍ଶ ବ୍ୟବହାର କାହାକୁ କହିବା, ଯିଏ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ହେଲା ! ଏବେ ଡ଼େଭ୍‌ଲପ୍‌ମେଣ୍ଟ(ଉନ୍ନତି)ର ସମୟ ଆସିଛି । ମତଭେଦ ହେବାକୁ ଦେବ ନାହିଁ । ଏଣୁ ଏବେ ମୁଁ ଲୋକଙ୍କୁ ଏଡ଼ଜଷ୍ଟ ଏଭ୍ରିହ୍ୱେୟାରର ସୂତ୍ର ଦେଇଛି ! ତରକାରି ଲୁଣିଆ ହୋଇଯାଇଛି, ତେବେ ବୁଝିନେବ ଯେ ଦାଦାଜୀ ଏଡ଼ଜଷ୍ଟମେଣ୍ଟ ନେବା ପାଇଁ କହିଛନ୍ତି । ଅଳ୍ପ ତରକାରି ଖାଇନେବ । ହଁ, ଆଚାର ମନେ ପଡେ, ତେବେ ମାଗିନେବ ଯେ ଅଳ୍ପ ଆଚାର ଆଣ । କିନ୍ତୁ ଝଗଡ଼ା ନୁହଁ । ଘରେ ଝଗଡ଼ା ନହେବା ଉଚିତ୍ । ଯଦି କୌଣସି ଜାଗାରେ ନିଜେ ଫସିଯାଇଛ ତେବେ ସେଠି ନିଜେ ହିଁ ଏଡ଼ଜଷ୍ଟମେଣ୍ଟ କରିନେବା, ତେବେ ସଂସାର ସୁନ୍ଦର ଲାଗିବ ।

## ପସନ୍ଦ ଆସୁନାହିଁ ତଥାପି ସ୍ୱୀକାର କର

ତୁମ ସହିତ ଯିଏ-ଯିଏ ଡ଼ିସ୍‌ଏଡ଼ଜଷ୍ଟ ହେବା ପାଇଁ ଆସନ୍ତି ସେମାନଙ୍କ ସହିତ ତୁମେ ଏଡ଼ଜଷ୍ଟ ହୋଇଯାଅ । ଦୈନନ୍ଦିନ ଜୀବନରେ ଯଦି ଶାଶୁ-ବୋହୂଙ୍କ ଭିତରେ ଅବା ଯାଆ ମାନଙ୍କ ଭିତରେ ଡ଼ିସ୍‌ଏଡ଼ଜଷ୍ଟମେଣ୍ଟ ହେଉଥାଏ ତେବେ, ଯାହାକୁ ଏହି ସଂସାର ଚକ୍ରରୁ ମୁକୁଳିବାର ଅଛି, ତା'କୁ ଏଡ଼ଜଷ୍ଟ ହୋଇଯିବା ଦରକାର । ପତି-ପତ୍ନୀଙ୍କ ମଧ୍ୟରୁ ଯଦି କେହି ଜଣେ ଫାଟ ସୃଷ୍ଟି କରେ, ତେବେ ଅନ୍ୟ ଜଣଙ୍କୁ ଯୋଡ଼ି ନେବା ଉଚିତ୍ । ତେବେ ଯାଇ ସମ୍ବନ୍ଧ ଠିକ୍ ରହିବ ଓ ଶାନ୍ତି ରହିବ । ଏହି ରିଲେଟିଭ୍ ସତ୍ୟରେ ଆଗ୍ରହ, ଜିଦ୍ କରିବା ଆଦୌ ଦରକାର ନାହିଁ । 'ମନୁଷ୍ୟ' ତା'କୁ ହିଁ କୁହାଯାଏ ଯିଏ ଏଭ୍ରିହ୍ୱେୟାର ଏଡ଼ଜଷ୍ଟେବଲ୍ ହୁଏ ।

## ସୁଧାରିବା ନା ଏଡ଼ଜଷ୍ଟ ହୋଇଯିବା ?

ପ୍ରତ୍ୟେକ କଥାରେ ଆମେ ଅନ୍ୟମାନଙ୍କ ସହିତ ଏଡ଼ଜଷ୍ଟ ହୋଇଗଲେ କେତେ ସରଳ ନ ହେବ! ଆମକୁ ସାଥିରେ କ'ଣ ନେଇଯିବାର ଅଛି ? କେହି କହେ, 'ଭାଇ, ସ୍ତ୍ରୀକୁ ସିଧା କରିଦିଅ ।' 'ଆରେ, ତା'କୁ ଯଦି ସିଧା କରିବାକୁ ଯିବ ତେବେ ତୁମେ ବଙ୍କା ହୋଇଯିବ ।'ଏଣୁ ସ୍ତ୍ରୀକୁ ସୀଧା କରିବାକୁ ଯାଅ ନାହିଁ, ଯେପରି ମଧ୍ୟ ହେଉ ନା କାହିଁକି ତା'କୁ କରେକ୍ଟ(ସଠିକ୍) କୁହ । ସେ ତୁମର ଚିରଦିନର ସାଥି ହୋଇଥାନ୍ତା ତେବେ ଅଲଗା କଥା, କିନ୍ତୁ ଏଠି ତ' ଗୋଟିଏ ଜନ୍ମ, ପରେ ଜଣା ନାହିଁ କୁଆଡ଼େ ହଜିଯିବା । ଦୁହିଁଙ୍କ ମୃତ୍ୟୁକାଳ ଅଲଗା, ଦୁହିଁଙ୍କ କର୍ମ ଅଲଗା । କିଛି ନେବାର ବି ନାହିଁ ଦେବାର ବି ନାହିଁ ! ଏଠାରୁ ସେ କେଉଁଠିକୁ ଯିବ ତାହାର କ'ଣ ଠିକଣା ? ତୁମେ ତା'କୁ ସିଧା କରିବ ଆଉ ପରଜନ୍ମରେ ସେ ଯିବ ଆଉ କାହା ଭାଗକୁ !

ଏଣୁ ନା ତ' ତୁମେ ତା'କୁ ସିଧା କର ଆଉ ନା ସେ ତୁମକୁ ସିଧା କରୁ । ଯାହାବି ମିଳିଲା ତାହା ସୁନା ପରି । ପ୍ରକୃତି କେବେ ମଧ୍ୟ କାହାର ସିଧା ହୋଇପାରିବନି । କୁକୁର ଲାଙ୍ଗୁଡ଼ ବଙ୍କାକୁ ବଙ୍କା ହିଁ ରୁହେ । ଏଣୁ ତୁମେ ସାବଧାନ ହୋଇ ଚାଲ । ଯେମିତି ଅଛି ସେମିତି ଠିକ୍ ଅଛି, ଏଡ଼ଜଷ୍ଟ ଏଭ୍ରିହ୍ୱେୟାର୍ ।

## ତେଢ଼ାଙ୍କ ସହିତ ଏଡ଼ଜଷ୍ଟ ହୋଇଯାଅ

ବ୍ୟବହାର ତାହାକୁ ହିଁ କୁହାଯିବ ଯେ, ଏଡ଼ଜଷ୍ଟ ହୋଇଯିବା ଯାହାଦ୍ୱାରା ପଡ଼ୋଶୀ ମଧ୍ୟ କହିବେ ଯେ 'ସମସ୍ତଙ୍କ ଘରେ ଝଗଡ଼ା ହେଉଛି, କିନ୍ତୁ ଏହି ଘରେ ଝଗଡ଼ା ନାହିଁ ।' ଯାହା ସହିତ ତାଳମେଳ ଖାଏ ନାହିଁ, ସେଠାରେ ହିଁ ଶକ୍ତି ବିକଶିତ

କରିବାକୁ ହେବ । ଅନୁକୂଳ ହେଲେ, ସେଠାରେ ତ' ଶକ୍ତି ଅଛି ହିଁ । ପ୍ରତିକୂଳ ଲାଗିବା, ତାହା ତ' ଦୁର୍ବଳତା ଅଟେ । ମୋର ସମସ୍ତଙ୍କ ସହିତ ଅନୁକୂଳତା କାହିଁକି ରହେ ? ଯେତେ ଏଡ୍‌ଜଷ୍ଟମେଣ୍ଟ ନେବ, ସେତେ ଶକ୍ତି ବଢ଼ିବ ଏବଂ କୁଶକ୍ତିଗୁଡିକ ନଷ୍ଟ ହୋଇଯିବ । ଉଚିତ୍ ବିଚାରଧାରା ସେତେବେଳେ ଆସିବ ଯେତେବେଳେ ସମସ୍ତ ଓଲଟା ବିଚାରରେ ତାଲା ଲାଗିଯିବ ।

ନରମ ସ୍ୱଭାବର ବ୍ୟକ୍ତିଙ୍କ ସହିତ କେହି ମଧ୍ୟ ଏଡ୍‌ଜଷ୍ଟ କରିନେବ କିନ୍ତୁ ଟେଢ଼ା, କଠୋର, ଗରମ ସ୍ୱଭାବ ଲୋକଙ୍କ ସହିତ ଏଡ୍‌ଜଷ୍ଟ ହେବା ଆସିବ ତେବେ କାମ ହୋଇଯିବ । ରାଗିଗଲେ ଚଳିବ ନାହିଁ । ସଂସାରର କୌଣସି ଜିନିଷ ଆମକୁ 'ଫିଟ୍' ହେବ ନାହିଁ, ଆମେ ତାହା ସହିତ 'ଫିଟ୍' ହୋଇଯିବା ତେବେ ଦୁନିଆ ସୁନ୍ଦର ଆଉ ତାହାକୁ 'ଫିଟ୍' କରିବାକୁ ଯିବା ତେବେ ଦୁନିଆ ଟେଢ଼ା । ଏଣୁ ଏଡ୍‌ଜଷ୍ଟ ଏଭ୍ରିହ୍ୱେୟାର ।

ତୁମର ଯଦି ଆବଶ୍ୟକ ଥିବ, ତେବେ ସମ୍ମୁଖ ବ୍ୟକ୍ତି ଟେଢ଼ା ହୋଇଥିଲେ ମଧ୍ୟ ତା'କୁ ମନାଇନେବା ଉଚିତ୍ । ଷ୍ଟେସନ୍‌ରେ କୁଲିର ଆବଶ୍ୟକତା ଥିବ ଆଉ ସେ କିଛି ଅଧିକ ପଇସା ଚାହୁଁଥିବ, ତଥାପି ଚାରି ଅଣା ଅଧିକ ଦେଇ ତା'କୁ ମନାଇନେବାକୁ ପଡ଼ିବ । ଆଉ ମନାଇବା ନାହିଁ ତେବେ ବ୍ୟାଗ ନିଜକୁ ହିଁ ଉଠାଇବାକୁ ପଡ଼ିବ ନା !

## ଅଭିଯୋଗ ? ନା, 'ଏଡ୍‌ଜଷ୍ଟ'

ଘରେ ମଧ୍ୟ ଏଡ୍‌ଜଷ୍ଟ ହେବା ଆସିବା ଦରକାର । ତୁମେ ଯଦି ସତ୍‌ସଙ୍ଗରୁ ଘରକୁ ବିଳମ୍ବରେ ଫେରିବ ତା'ହେଲେ ଘରେ କ'ଣ କହିବେ ? କିଛିଟା ତ' ସମୟର ଧ୍ୟାନ ରଖିବା ଉଚିତ୍ ନା ? ଯଦି ଆମେ ଟିକିଏ ଶୀଘ୍ର ଘରେ ପହଞ୍ଚି ଯିବା ତା'ହେଲେ ଏଥିରେ କ୍ଷତି କ'ଣ ? ଏବେ ତା'କୁ ଏପରି ମାଡ଼ ଖାଇବାର ସମୟ କାହିଁକି ଆସିଲା ? କାରଣ ପୂର୍ବରୁ ଅନେକ ଅଭିଯୋଗ କରିଥିଲା । ଏହା ତାହାର ପରିଣାମ ସ୍ୱରୂପ । ସେତେବେଳେ କ୍ଷମତାରେ ଥିଲା, ଅଭିଯୋଗ ପରେ ଅଭିଯୋଗ କରିଥିଲା । ଏବେ କ୍ଷମତାରେ ନାହିଁ, ତେଣୁ ଅଭିଯୋଗ ନ କରି ରହିବାକୁ ହେବ । ଏଥିପାଇଁ ଏବେ 'ପ୍ଲସ୍-ମାଇନାସ୍' କରିଦିଅ । ଯଦି କେହି ଗାଳି ଦେଇଗଲା, ତାହାକୁ ଜମା କରିନିଅ । ଅଭିଯୋଗକାରୀ ହେବାର ହିଁ ନାହିଁ !

ଘରେ ସ୍ୱାମୀ-ସ୍ତ୍ରୀ ଦୁହେଁ 'ନିଶ୍ଚୟ' କରିନିଅ ଯେ ମୋତେ 'ଏଡ୍‌ଜଷ୍ଟ' ହେବାର ଅଛି, ତେବେ ଦୁହିଁଙ୍କ ସମସ୍ୟାର ସମାଧାନ ହୋଇଯିବ । ଯଦି ସେ ଜିଦ୍ ଧରି ବସେ, ତେବେ ଆମେ ଏଡ୍‌ଜଷ୍ଟ ହୋଇଗଲେ ସମସ୍ୟାର ସମାଧାନ ହୋଇଯିବ ।

ଯଦି 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର୍' ନ ହେବ ତେବେ ସବୁ ପାଗଳ ହୋଇଯିବ । ଅନ୍ୟକୁ ଚିଡ଼ାଉଥିଲ, ସେଥିପାଇଁ ପାଗଳ ହୋଇଅଛ !

ଯାହାକୁ ଏଡ଼ଜଷ୍ଟ ହେବାର କଳା ଆସିଗଲା, ସେ ଦୁନିଆରୁ 'ମୋକ୍ଷ' ଆଡ଼କୁ ଗତି କଲା । 'ଏଜେଷ୍ଟମେଣ୍ଟ' ହେବା, ତାହାର ନାମ ହିଁ ଜ୍ଞାନ । ଯିଏ, ଏଡ଼ଜଷ୍ଟମେଣ୍ଟ ହେବାର କଳା ଶିଖିଗଲା ସେ ପାରି ହୋଇଗଲା ।

କିଛି ଲୋକଙ୍କୁ ରାତିରେ ଡେରିରେ ଶୋଇବାର ଅଭ୍ୟାସ ଥାଏ, ଆଉ କିଛି ଲୋକଙ୍କର ଶୀଘ୍ର ଶୋଇବାର ଅଭ୍ୟାସ ଥାଏ, ତେବେ ସେହି ଦୁହିଁଙ୍କର ମେଳ କିପରି ହେବ ? ଆଉ ଯଦି ପରିବାରରେ ସମସ୍ତେ ସାଥିରେ ରହୁଥିବେ ତା'ହେଲେ କ'ଣ ହେବ ? ଯଦି ଘରେ ଜଣେ ବ୍ୟକ୍ତି ଏପରି କୁହେ ଯେ 'ତୁମର ତ' ବୁଦ୍ଧି ନାହିଁ', ତେବେ ତୁମକୁ ବୁଝିନେବା ଉଚିତ୍ ଯେ ତା'ର କଥାବାର୍ତ୍ତା ଏପରି ହିଁ ଅଟେ । ତୁମକୁ ଏଡ଼ଜଷ୍ଟ ହୋଇଯିବା ଉଚିତ୍ । ଏହା ନକରି ଯଦି ତୁମେ ପ୍ରତ୍ୟୁତ୍ତର ଦେବ ତା'ହେଲେ ଥକିଯିବ । କାରଣ ସେ ତ' ତୁମକୁ ଧକ୍କା ଦେଲା ଆଉ ତୁମେ ବି ତା'କୁ ଧକ୍କା ଦେଲେ, ଏହା ପ୍ରମାଣିତ ହେବ ଯେ ତୁମର ମଧ୍ୟ ଆଖି ନାହିଁ ।

ମୁଁ ପ୍ରକୃତିକୁ ଚିହ୍ନିପାରେ, ଏଣୁ ତୁମେ ଧକ୍କା ଲାଗିବା ପାଇଁ ଚାହିଁଲେ ମଧ୍ୟ ମୁଁ ଧକ୍କା ହେବାକୁ ଦେବି ନାହିଁ, ମୁଁ ଖସି ଯିବି । ନଚେତ୍ ଏକ୍ସିଡେଣ୍ଟ (ଦୁର୍ଘଟଣା) ହୋଇଯିବ ଏବଂ ଦୁହିଁଙ୍କର ସ୍ପେୟାର୍ ପାର୍ଟସ୍(ଅଙ୍ଗପ୍ରତ୍ୟଙ୍ଗ) ଭାଙ୍ଗିଯିବ । ଯଦି କାହାର ବମ୍ପର ଭାଙ୍ଗିଯାଏ ତା'ହେଲେ ଭିତରେ ବସିଥିବା ଲୋକର ଅବସ୍ଥା କ'ଣ ହେବ ? ବସିଥିବା ଲୋକର ଦୁର୍ଦ୍ଦଶା ହୋଇଯିବନା ! ଏଣୁ ପ୍ରକୃତିକୁ ଚିହ୍ନ । ଘରେ ସମସ୍ତଙ୍କ ପ୍ରକୃତିକୁ ଚିହ୍ନିନେବା ଦରକାର ।

ଆଉ ଏହି ଝଗଡ଼ା କ'ଣ ପ୍ରତିଦିନ ହୁଏ ? ତାହା ତ' ଯେତେବେଳେ ଆମ କର୍ମର ଉଦୟ ହୁଏ ସେତେବେଳେ ହୋଇଥାଏ, ସେତେବେଳେ ଆମକୁ ଏଡ଼ଜଷ୍ଟ ହେବାକୁ ପଡ଼ିବ । ଘରେ ସ୍ତ୍ରୀ ସହିତ ଝଗଡ଼ା ହୋଇଥିଲେ ପରେ ତା'କୁ ହୋଟେଲ୍ ନେଇ ଖୁଆଇ ପିଆଇ ଖୁସି କରିଦେବ । ଏବେ ଫଂତ୍(ସନ୍ତାପ, ମନର ବୋଝ) ନ ରହିବା ଉଚିତ୍ ।

ଯାହା ମଧ୍ୟ ଥାଳିରେ ମିଳୁଛି ତାହା ଖାଇନିଅ । ଯାହା ସାମ୍ନାରେ ଆସିଲା ତାହା ସଂଯୋଗ ଏବଂ ଭଗବାନ କହିଛନ୍ତି ଯେ ସଂଯୋଗକୁ ଧକ୍କା ମାରିଲେ ସେହି ଧକ୍କା ତୁମକୁ ଲାଗିବ । ଏଥିପାଇଁ ମୋ ଥାଳିରେ ମୋତେ ରୁଚୁନଥିବା ଖାଦ୍ୟ ଥିଲେ ମଧ୍ୟ ସେଥିରୁ ଦୁଇଟା ଖାଇନିଏ ।

ଯାହାକୁ ଏଡ଼ଜଷ୍ଟ ହେବା ଆସେ ନାହିଁ, ସେହି ମନୁଷ୍ୟକୁ ମନୁଷ୍ୟ କିପରି କହିବା ? ଯିଏ ସଂଯୋଗାଧୀନ ହୋଇ ଏଡ଼ଜଷ୍ଟ ହୋଇଯାଏ, ତାଙ୍କ ଘରେ କିଛି ବି ଝଞ୍ଝଟ ହେବ ନାହିଁ । ସଂଯୋଗର ଲାଭ ଉଠାଇବାର ଅଛି ତ' ଏଡ଼ଜଷ୍ଟ ହୋଇଯାଅ । ଏ ତ' ଲାଭ କିଛି ନାହିଁ, ଓଲଟା ବୈର(ଶତ୍ରୁତା) ବାନ୍ଧିବା, ତାହା ଅଲଗା ।

ପ୍ରତ୍ୟେକ ବ୍ୟକ୍ତିଙ୍କ ଜୀବନରେ କିଛି ପ୍ରିନ୍‌ସିପଲ୍(ସିଦ୍ଧାନ୍ତ) ରହିବା ଆବଶ୍ୟକ । ତଥାପି ସଂଯୋଗ ଅନୁସାରେ ବ୍ୟବହାର କରିବା ଉଚିତ୍ । ସଂଯୋଗ ସହିତ ଏଡ଼ଜଷ୍ଟ ହୋଇଯାଏ, ସେ ମନୁଷ୍ୟ ଅଟେ । ଯଦି ପ୍ରତ୍ୟେକ ସଂଯୋଗରେ ଏଡ଼ଜଷ୍ଟମେଣ୍ଟ ନେବା ଆସିଯାଏ, ତେବେ ସିଧା ମୋକ୍ଷରେ ପହଞ୍ଚିପାରିବ, ଏହା ଏପରି ଏକ ଅପୂର୍ବ ଅସ୍ତ୍ର ।

## ଡ଼ିସ୍‌ଏଡ୍‌ଜଷ୍ଟମେଣ୍ଟ, ଏହା ହିଁ ମୂର୍ଖତା

ଆମର କଥା ସମ୍ମୁଖବ୍ୟକ୍ତିକୁ 'ଏଡ଼ଜଷ୍ଟ' ହେବା ହିଁ ଦରକାର । ଆମ କଥା ସମ୍ମୁଖବ୍ୟକ୍ତିଙ୍କୁ 'ଏଡ଼ଜଷ୍ଟ' ନ ହେଲେ ତାହା ଆମର ହିଁ ଭୁଲ । ନିଜର ଭୁଲ ସୁଧାରିନେଲେ 'ଏଡ଼ଜଷ୍ଟ' ହୋଇପାରିବ । ବୀତରାଗମାନଙ୍କ ବାର୍ତ୍ତା 'ଏଭ୍ରିହ୍ୱେୟାର ଏଡ଼ଜଷ୍ଟମେଣ୍ଟ'ର ଅଟେ । ଡ଼ିସ୍‌ଏଡ୍‌ଜଷ୍ଟମେଣ୍ଟ ହିଁ ମୂର୍ଖତା ଅଟେ । ଏଡ଼ଜେଷ୍ଟମେଣ୍ଟକୁ ମୁଁ ନ୍ୟାୟ କୁହେ । ଆଗ୍ରହ-ଦୂରାଗ୍ରହ,ଏ ସବୁକୁ ନ୍ୟାୟ କୁହାଯାଏ ନାହିଁ ।

ଏ ପର୍ଯ୍ୟନ୍ତ ଜଣେ ବି ବ୍ୟକ୍ତି ମୋ ସହିତ ଡ଼ିସ୍‌ଏଡ଼ଜଷ୍ଟ ହୋଇ ନାହାନ୍ତି । ଆଉ ଏହି ଲୋକମାନେ ତ' ଘରେ ଥିବା ଚାରି ସଦସ୍ୟଙ୍କ ସହିତ ଏଡ଼ଜଷ୍ଟ ହୋଇପାରୁ ନାହାନ୍ତି । ଏହି ଏଡ଼ଜଷ୍ଟ ହେବା ଆସିବ ନା, ନାହିଁ? ଏପରି ହୋଇ ପାରିବ କି ନାହିଁ? ଆମେ ଯେପରି ଦେଖୁ ସେପରି ତ' ଶିଖିଯାଉ ନା ? ଏହି ସଂସାରର ନିୟମ କ'ଣ କି ଯେପରି ତୁମେ ଦେଖିବ ସେତିକି ତ' ତୁମକୁ ଆସିଯିବ ହିଁ । ସେଥିରେ କିଛି ଶିଖିବା ଭଳି ନଥାଏ ।

ସଂସାରରେ ଆଉ କିଛି ନ ଆସିଲେ ମଧ୍ୟ କୌଣସି ଅସୁବିଧା ନାହିଁ । କାମ-ଧନ୍ଦା କରିବା କମ୍ ଆସୁଥିଲେ ମଧ୍ୟ କୌଣସି ଅସୁବିଧା ନାହିଁ । ମାତ୍ର ଏଡ଼ଜଷ୍ଟ ହେବା ଆସୁଥିବା ଦରକାର । ଅର୍ଥାତ ବସ୍ତୁସ୍ଥିତିରେ ଏଡ଼ଜଷ୍ଟ ହେବା ଶିଖିବା ଉଚିତ । ଏହି ଯୁଗରେ ଏଡ଼ଜଷ୍ଟ ହେବା ନ ଆସିବ ତେବେ ମରିଯିବ । ଏଣୁ ଏଡ଼ଜଷ୍ଟ ଏଭ୍ରିହ୍ୱେୟାର ହୋଇ କାମ କାଢ଼ିନେବା ଉଚିତ୍ ।



# ଘର୍ଷଣ ଟାଳନ୍ତୁ

## ଆସ ନାହିଁ ଘର୍ଷଣରେ

'କାହାରି ସହିତ ଘର୍ଷଣରେ ପଡ଼ନ୍ତୁ ନାହିଁ ଏବଂ ଘର୍ଷଣ ଟାଳନ୍ତୁ' ମୋର ଏହି ବାକ୍ୟର ଯଦି ଆରାଧନା କରିବ ତେବେ ସିଧା ମୋକ୍ଷ ପର୍ଯ୍ୟନ୍ତ ପହଞ୍ଚିଯିବ । ମୋର ଗୋଟିଏ ହିଁ ଶବ୍ଦ, ଯେପରି ଅଟେ ସେପରି, ସମ୍ପୂର୍ଣ୍ଣ ଭାବେ କଣ୍ଠସ୍ଥ କରିନେବ, ତେବେ ମଧ୍ୟ ମୋକ୍ଷ ତୁମର ହାତ ପାହାନ୍ତାକୁ ଆସିଯିବ, ଏପରି ଅଟେ ।

ମୋର ଗୋଟିଏ ଶବ୍ଦକୁ ଯଦି ଗୋଟିଏ ଦିନ ବି ପାଳନ କରିବ ତେବେ ମଧ୍ୟ ଅପୂର୍ବ ଶକ୍ତି ଉତ୍ପନ୍ନ ହେବ ! ଭିତରେ ଏତେ ସାରା ଶକ୍ତି ଅଛି ଯେ କେହି କିଭଳି ମଧ୍ୟ ଧକ୍କା ହେବା ପାଇଁ ଆସୁ ତଥାପି ଆମେ ତାହାକୁ ଟାଳି ପାରିବା ।

ଯଦି ଭୁଲରେ ମଧ୍ୟ ତୁମେ କାହା ସହ ମତଭେଦରେ ଆସିଗଲ ତେବେ ତାହାର ସମାଧାନ କରିନେବ । ଅତି ସହଜରେ ସେହି ମତଭେଦରୁ ଘର୍ଷଣର ଚିଙ୍ଗାରି ନ ଉଡ଼ାଇ ବାହାରିଯିବ ।

## ଟ୍ରାଫିକ୍ ନିୟମ ଦ୍ୱାରା ଟଳେ ଦୁର୍ଘଟଣା

ପ୍ରତ୍ୟେକ ଧକ୍କାରେ ସର୍ବଦା ଉଭୟଙ୍କର କ୍ଷତି ହୋଇଥାଏ । ତୁମେ ସାମନାବାଲାକୁ ଦୁଃଖ ପହଞ୍ଚାଇବ ତେବେ ସଙ୍ଗେ ସଙ୍ଗେ, ସେହିକ୍ଷଣି ତୁମକୁ ମଧ୍ୟ ଦୁଃଖ ନ ପହଞ୍ଚି ରହିବ ନାହିଁ । ଏହା ଘର୍ଷଣ ଅଟେ । ଏଣୁ ମୁଁ ଏହି ଉଦାହରଣ ଦେଇଛି ଯେ ରାସ୍ତାରେ ଟ୍ରାଫିକ୍‌ର ନିୟମ କ'ଣ, ଯେ ଧକ୍କା ଲାଗିଲେ ତୁମେ ମରିଯିବ, ଧକ୍କା ହେବାରେ ବିପଦ ଅଛି । ଏଣୁ କାହାରି ସହିତ ଧକ୍କା ହୁଅ ନାହିଁ । ଏହିପରି ବ୍ୟବହାରିକ କାର୍ଯ୍ୟରେ ମଧ୍ୟ ମତଭେଦ ହେବାକୁ ଦିଅ ନାହିଁ ।

ଯଦି କେହି ଲଢ଼ିବା ପାଇଁ ଆସେ ଏବଂ ଶବ୍ଦ ଗୁଡ଼ିକ ବମ୍‌ର ଗୋଳା ପରି ଆସୁଥାଏ, ତେବେ ଆମକୁ ବୁଝିନେବାକୁ ହେବ ଯେ ଧକ୍କା ଟାଳିବାକୁ ପଡ଼ିବ । ଆମ ମନରେ ଆଦୌ ପ୍ରଭାବ ନ ପଡୁ, ତଥାପି କେବେ କିଛି ପ୍ରଭାବ ପଡ଼ିଯାଏ, ତେବେ ବୁଝିନେବା ଉଚିତ୍ ଯେ ସାମ୍ନାବାଲାର ମନର ପ୍ରଭାବ ଆମ ଉପରେ ପଡ଼ିଛି । ସେତେବେଳେ ଆମକୁ ଖସିଯିବା ଉଚିତ୍ । ଏସବୁ ଘର୍ଷଣ ଅଟେ । ଏହାକୁ ଯେତେ ବୁଝି ବୁଝି ଯିବ ସେତେ ଘର୍ଷଣ ଟାଳିଚାଲିବ । ଘର୍ଷଣ ଟାଳିବା ଦ୍ୱାରା ମୋକ୍ଷ ହୋଇଥାଏ ।

ଘର୍ଷଣରୁ ଏହି ଜଗତ ନିର୍ମିତ ହୋଇଛି । ତାହାକୁ ଭଗବାନ 'ବୈରୀରୁ ସୃଷ୍ଟି ହୋଇଛି' ବୋଲି କହିଛନ୍ତି । ପ୍ରତ୍ୟେକ ମନୁଷ୍ୟ, ଆରେ, ଜୀବମାତ୍ର ବୈର ରଖେ । ସାମର୍ଥ୍ୟରୁ ଅଧିକ ହେଲେ ବୈର ନରଖି ରହିବ ନାହିଁ । କାରଣ ସମସ୍ତଙ୍କ ଭିତରେ

ଆତ୍ମା ଅଛି । ଆତ୍ମଶକ୍ତି ସମସ୍ତଙ୍କଠାରେ ସମାନ । କାରଣ ଏହା ଯେ, ଏହି *ପୁଦ୍‌ଗଲ*(ଶରୀର)ର ଦୁର୍ବଳତା ପାଇଁ ସହନ କରିବାକୁ ପଡିଥାଏ, ମାତ୍ର ସହନ କରିବା ସହିତ ବୈର ନ ରଖି ରୁହେ ନାହିଁ ଏବଂ ପୁଣି ପରଜନ୍ମରେ ସେ ତା'ର ବୈର ଅସୁଲ କରିଥାଏ ।

କେହି ମନୁଷ୍ୟ ବହୁତ କୁହେ, ତେବେ ତା'ର କୌଣସି ମଧ୍ୟ କଥାରେ ଆମକୁ ମତଭେଦ ନହେବା ଉଚିତ୍ । ଏବଂ ନିଜ ଦ୍ୱାରା ସାମ୍‌ନାବାଲାର ଅସୁବିଧା ହୁଏ, ଏପରି କହିବା ବଡ଼ରୁ ବଡ଼ ଅପରାଧ ଅଟେ ।

## ସହନ ? ନା, ସୋଲ୍ୟୁଶନ(ସମାଧାନ) ଆଣ

ଘର୍ଷଣ ଟାଳିବା ଅର୍ଥାତ ସହନ କରିବା ନୁହେଁ । ସହନ କରିବ ତ' କେତେ କରିବ ? ସହନ କରିବା ଏବଂ 'ସ୍ପ୍ରିଙ୍ଗ୍' ଦବାଇବା, ଏ ଦୁଇଟି ଏକା ପରି ଅଟନ୍ତି । 'ସ୍ପ୍ରିଙ୍ଗ୍ ଦବି ହୋଇ କେତେ ଦିନ ରହିବ ?'ଏଣୁ ସହନ କରିବା ତ' ଶିଖିବ ହିଁ ନାହିଁ। ସୋଲ୍ୟୁଶନ ଆଣିବା ଶିଖ । ଅଜ୍ଞାନ ଦଶାରେ ତ' ସହନ ହିଁ କରିବାକୁ ପଡ଼ିଥାଏ । ପରେ ଦିନେ ସ୍ପ୍ରିଙ୍ଗ୍ ଛିଟିକିଯାଏ, ଆଉ ସବୁକିଛି ବିଛାଡ଼ି ଦିଏ ।

ଅନ୍ୟ କାହା କାରଣରୁ ଯଦି ଆମକୁ ସହନ କରିବାକୁ ପଡ଼େ, ତାହା ନିଜର ହିଁ ହିସାବ ଅଟେ । କିନ୍ତୁ ତୁମକୁ ଜଣାପଡ଼େ ନାହିଁ ଯେ ଏହା କେଉଁ ବହିଖାତାର ଏବଂ କେଉଁଠିକାର ମାଲ୍, ଏଣୁ ଆମେ ମାନିନିଅନ୍ତି ଯେ ଏ ନୂଆ ମାଲ୍ ଦେବା ଆରମ୍ଭ କଲା । ନୂଆ ମାଲ୍ କେହି ଦିଏ ନାହିଁ, ଦିଆଯାଇଥିବା ମାଲ୍ ହିଁ ଫେରିକି ଆସେ । ଏ ଯାହା ଆସିଲା ତାହା ମୋର ହିଁ କର୍ମର ଉଦୟରୁ ଆସିଲା, ସାମ୍‌ନାବାଲା ତ' ନିମିତ୍ତ ଅଟେ ।

## ଧକ୍କା ହେଲ, ନିଜର ହିଁ ଭୁଲ ଯୋଗୁଁ

ଏହି ଦୁନିଆରେ ଯେଉଁ ସବୁ ମତଭେଦ ହୋଇଥାଏ, ତାହା ତୁମର ହିଁ ଭୁଲ ଅଟେ, ସାମ୍‌ନାବାଲାର ଭୁଲ ନୁହେଁ ! ସାମ୍‌ନାବାଲା ତ' ଧକ୍କା ହେବେ ହିଁ ହେବେ । 'ତୁମେ କାହିଁକି ଧକ୍କା ଲାଗିଲ ?' ତେବେ କହିବେ,'ସାମ୍‌ନାବାଲା ଧକ୍କା ହେଲା ଏଥିପାଇଁ!' ତା'ହେଲେ ତୁମେ ମଧ୍ୟ ଅନ୍ଧ ଆଉ ସିଏ ମଧ୍ୟ ଅନ୍ଧ ହୋଇଗଲା ।

ମତଭେଦ ହୋଇଗଲା ତେବେ ଆମକୁ ବୁଝିବା ଉଚିତ୍ ଯେ, 'ଏପରି ମୁଁ କ'ଣ କହିଦେଲି ଯାହା ଦ୍ୱାରା ମତଭେଦ ହୋଇଗଲା ?' ନିଜ ଭୁଲ ଜଣାପଡ଼ିଗଲେ ସମାଧାନ ମିଳିଯିବ । ପୁଣି ପଜ୍ଝଲ ସଲ୍‌ଭ(ଦ୍ୱନ୍ଦ୍ୱ ସମାଧାନ) ହୋଇଯିବ । ଅନ୍ୟଥା ଯେ ପର୍ଯ୍ୟନ୍ତ ଆମେ 'ସାମ୍‌ନାବାଲାର ଭୁଲ ଅଛି' ଏପରି ଖୋଜିବା ପାଇଁ ଯିବା

ତେବେ କେବେ ମଧ୍ୟ ଏ ପଜଲ ସଲ୍‌ଭ ହେବ ନାହିଁ । 'ନିଜର ହିଁ ଭୁଲ' ଏପରି ମାନିବ ତେବେ ଯାଇ ଏହି ସଂସାରଚକ୍ରର ଅନ୍ତ ଆସିବ । ଅନ୍ୟ କୌଣସି ଉପାୟ ନାହିଁ । କାହାରି ସହିତ ମଧ୍ୟ ମତଭେଦ ହେଲା, ତେବେ ତାହା ନିଜର ହିଁ ଅଜ୍ଞାନତାର ପରିଚୟ ଅଟେ ।

ଯଦି ଛୋଟ ପିଲାଟିଏ ପଥର ମାରେ ଏବଂ ତୁମର ରକ୍ତ ବାହାରି ଆସେ, ତେବେ ପିଲାଟିକୁ କ'ଣ କରିବ ? ରାଗିବ ? ଆଉ ତୁମେ ଯାଉଛ ଏବଂ ପାହାଡ଼ ଉପରୁ ପଥରଟିଏ ଖସିଆସି ତୁମ ଦେହରେ ବାଜିଲା ଏବଂ ରକ୍ତ ବାହାରିଲା, ତେବେ କ'ଣ କରିବ ? ରାଗିବ ? ନା । ତାହାର କାରଣ କ'ଣ ? ତାହା ପାହାଡ଼ ଉପରୁ ଖସିଲା । ଆଉ ସେଠାରେ ପିଲାଟି ପଥର ମାରିବା ପରେ ପଶ୍ଚାତାପ କରୁଥିବ ଯେ ଏହା ମୋ ଦ୍ୱାରା କ'ଣ ହୋଇଗଲା ! ଆଉ ଯଦି ପାହାଡ଼ ଉପରୁ ଖସିଲା, ତେବେ କିଏ ଖସାଇଲା ?

## ସାଇନ୍ସ(ବିଜ୍ଞାନ), ବୁଝିବା ଯୋଗ୍ୟ

**ପ୍ରଶ୍ନକର୍ତ୍ତା :** ଆମର କ୍ଲେଶ କରିବାର ନଥିବ, ମାତ୍ର କେହି ସାମ୍‌ନାରୁ ଆସି ଝଗଡ଼ା କରିବାକୁ ଲାଗେ ତେବେ କ'ଣ କରିବୁ ?

**ଦାଦାଶ୍ରୀ :** ଏହି କାନ୍ଥ ସହିତ ଯଦି କେହି ଲଢ଼ିବ ତେବେ କେତେ ସମୟ ପର୍ଯ୍ୟନ୍ତ ଲଢ଼ି ପାରିବ ? ଯଦି କେବେ ଏହି କାନ୍ଥରେ ମଥା ବାଡ଼େଇ ହୋଇଯିବ, ତେବେ ତୁମେ ତା' ସହିତ କ'ଣ କରିବ ? ମଥା ବାଡ଼େଇ ହୋଇଗଲା ମାନେ ତୁମର କାନ୍ଥ ସହିତ ଲଢ଼େଇ ହୋଇଗଲା, ଏବେ କ'ଣ କାନ୍ଥକୁ ମାରିବ ? ସେହିପରି ଏମାନେ ଯେଉଁ ବହୁତ କ୍ଲେଶ କରନ୍ତି, ସେମାନେ ସବୁ କାନ୍ଥ ଅଟନ୍ତି ! ଏଥିରେ ସାମ୍‌ନାବାଲାକୁ କ'ଣ ଦେଖିବା, ନିଜକୁ ନିଜେ ବୁଝିନେବା ଉଚିତ୍ ଯେ ଏସବୁ କାନ୍ଥପରି, ତେବେ କୌଣସି ସମସ୍ୟା ରହିବ ନାହିଁ ।

ଆପଣଙ୍କର ଏହି କାନ୍ଥକୁ ଗାଳି ଦେବାର ସତ୍ତା ଅଛି ? ଠିକ୍ ଏହିପରି ସାମ୍‌ନାବାଲା ପାଇଁ ଅଟେ । ଆଉ ତା'(ସ୍ତ୍ରୀ) ନିମିତ୍ତରୁ ଯେଉଁ ଘର୍ଷଣ(ହିସାବ) ଅଛି, ତାହା ତ' ଛାଡ଼ିବ ନାହିଁ, ସେଥିରୁ ବଞ୍ଚିପାରିବା ନାହିଁ । ବ୍ୟର୍ଥ ଚିତ୍କାର କରିବାର ମାନେ କ'ଣ ? ଯେବେକି ତା' ହାତରେ ସତ୍ତା ହିଁ ନାହିଁ ! ସେଥିପାଇଁ ତୁମେ ମଧ୍ୟ କାନ୍ଥପରି ହୋଇଯାଅ ! ତୁମେ ସ୍ତ୍ରୀକୁ ଗାଳି ଦେଉଛ, ମାତ୍ର ତାଙ୍କ ଭିତରେ ଯେଉଁ ଭଗବାନ ବସିଛନ୍ତି ସେ ନୋଟ କରୁଛନ୍ତି ଯେ ଏ ମୋତେ ଗାଳି ଦେଉଛି ! ଆଉ ଯଦି ସେ ତୁମକୁ ଗାଳି ଦିଏ, ତା' ହେଲେ ତୁମେ କାନ୍ଥପରି ହୋଇଯାଅ ତେବେ ତୁମ ଭିତରେ ଥିବା ଭଗବାନ ତୁମକୁ ହେଲ୍ପ(ସାହାଯ୍ୟ) କରିବେ ।

କାହା ସହିତ ମତଭେଦ ହେବା ଏବଂ କାନ୍ଥ ସହିତ ଧକ୍କା ଲାଗିବା, ଏ ଦୁଇଟି ସମାନ କଥା ଅଟେ । ଏ ଦୁଇଟି ମଧ୍ୟରେ କୌଣସି ଭେଦ ନାହିଁ । କାନ୍ଥ ସହିତ ଯିଏ ଧକ୍କା ହୁଏ, ସେ ନଦେଖାଯିବା କାରଣରୁ ଧକ୍କା ହୁଏ । ଏବଂ ମତଭେଦ ହୁଏ, ତାହା ମଧ୍ୟ ନଦେଖାଯିବା କାରଣରୁ ହୋଇଥାଏ । ଆଗକୁ ତା'କୁ ଦେଖାଯାଏ ନାହିଁ, ଆଗକୁ ତା'କୁ ସୋଲ୍ୟୁଶନ ମିଳେନାହିଁ, ଏଣୁ ମତଭେଦ ହୋଇଥାଏ । ଏ କ୍ରୋଧ-ମାନ-ମାୟା-ଲୋଭ ଆଦି କରନ୍ତି ତାହା ନଦେଖାଯିବା କାରଣରୁ ହିଁ କରନ୍ତି ! ତେବେ ଏହିପରି କଥାକୁ ବୁଝିବା ଉଚିତ୍ ନା ! ଯିଏ ଭୋଗିଲା ତା'ର ଦୋଷ ନା ! କାନ୍ଥର କୌଣସି ଦୋଷ ଅଛି ? ତେବେ ଏହି ସଂସାରରେ ସମସ୍ତେ କାନ୍ଥ ହିଁ ଅଟନ୍ତି । ଯଦି କାନ୍ଥ ସହିତ ଧକ୍କା ହୁଏ, ତେବେ ତୁମେ ତା' ସହିତ ଝଗଡ଼ା କରିବାକୁ ଯାଅ ନାହିଁ ନା ? ଯେ 'ଏହା ମୋର ଠିକ୍' ଏପରି ଲଢ଼ିବାର ଝଞ୍ଜଟରେ ତୁମେ ପଡ଼ନାହିଁ ନା ? ସେହିପରି ଏମାନେ ସବୁ କାନ୍ଥ ସ୍ଥିତିରେ ଅଛନ୍ତି । ଆମେ ଠିକ୍‌ବୋଲି ସେମାନଙ୍କୁ ମନାଇବାର ଆବଶ୍ୟକ ହିଁ ନାହିଁ ।

## ମତଭେଦ, ତାହା ଅଜ୍ଞାନତା ହିଁ ଅଟେ ନିଜର

ମତଭେଦ ହେବାର କାରଣ କ'ଣ ? ଅଜ୍ଞାନତା । ଯେ ପର୍ଯ୍ୟନ୍ତ କାହାରି ସହିତ ମତଭଦେ ହେଉଛି ତେବେ ତାହା ତୁମ ନିର୍ବଳତାର ପରିଚୟ ଅଟେ । ଲୋକେ ଭୁଲ ନୁହଁନ୍ତି, ମତଭେଦରେ ଭୁଲ ତୁମର ଅଟେ । ଲୋକମାନଙ୍କର ଭୁଲ ହୁଏ ହିଁ ନାହିଁ । ସେ ଜାଣି-ଶୁଣି ମଧ୍ୟ କରୁଥାଉ ତଥାପି ଆମକୁ କ୍ଷମା ମାଗିନେବା ଉଚିତ୍ ଯେ, 'ଭାଇ, ଏହା ମୁଁ ବୁଝିପାରୁ ନାହିଁ । ଯେଉଁଠି ମତଭେଦ ହେଲା, ସେଠାରେ ନିଜର ହିଁ ଭୁଲ ।

## ଘର୍ଷଣ ଦ୍ୱାରା ଶକ୍ତିର ହନନ(କ୍ଷୟ)

ସମସ୍ତ ଆତ୍ମଶକ୍ତି ଯଦି କୌଣସି ଜିନିଷ ଦ୍ୱାରା ଖତମ ହେଉଥାଏ ତେବେ ତାହା ହେଉଛି ଘର୍ଷଣ ଦ୍ୱାରା । ଟିକିଏ ମଧ୍ୟ ଝଗଡ଼ା କଲ ତେବେ ଖତମ । ସାମ୍ନାବାଲା ଚିଡ଼ାଏ, ତେବେ ଆମକୁ ସଂଯମ ପୂର୍ବକ ରହିବା ଉଚିତ୍ । ମତଭେଦ ତ' ନହେବା ହିଁ ଉଚିତ୍ । ଯଦି କେବଳ ଘର୍ଷଣ ନହେବ, ତେବେ ମଣିଷ ମୋକ୍ଷରେ ଚାଲିଯିବ । ଯଦି କେହି କେବଳ ଏତିକି ମାତ୍ର ଶିଖିଯାଏ ଯେ 'ମୋତେ ଘର୍ଷଣରେ ଆସିବାର ହିଁ ନାହିଁ',ତେବେ ପୁଣି ତା'କୁ ଗୁରୁ କିମ୍ବା ଆଉ କାହାର ମଧ୍ୟ ଆବଶ୍ୟକତା ନାହିଁ । ଗୋଟିଏ କିମ୍ବା ଦୁଇଟି ଜନ୍ମରେ ସିଧା ମୋକ୍ଷରେ ଯିବ । 'ଘର୍ଷଣରେ ଆସିବାର ହିଁ ନାହିଁ'ଏପରି ଯଦି ତା'ର ଶ୍ରଦ୍ଧାରେ ଆସିଗଲା ଓ 'ନିଶ୍ଚୟ' କରିନେଲା, ସେବେଠାରୁ ସେ ସମକିତ୍ ହୋଇଗଲା !

ପୂର୍ବରୁ ଯେଉଁ ଘର୍ଷଣ ହୋଇଯାଇଥିଲା ଆଉ ତାହା ଦ୍ୱାରା ଯେଉଁ କ୍ଷତି ହୋଇଥିଲା, ତାହା ଏବେ ଫେରିଆସୁଛି । କିନ୍ତୁ ଏବେ ଯଦି ନୂଆ ଘର୍ଷଣ ସୃଷ୍ଟି କରିବ, ତେବେ ପୁଣି ଶକ୍ତି ଚାଲିଯିବ । ଆସିଥିବା ଶକ୍ତି ମଧ୍ୟ ଚାଲିଯିବ ଆଉ ଯଦି ନିଜେ ଘର୍ଷଣ ହେବାକୁ ଦେବା ନାହିଁ, ତେବେ ଶକ୍ତି ଉତ୍ପନ୍ନ ହେଉଥିବ !

ଏହି ଦୁନିଆରେ ବୈରୀ ଯୋଗୁଁ ଘର୍ଷଣ ହୋଇଥାଏ । ସଂସାରର ମୂଳ ବୀଜ ବୈର ଅଟେ । ଯାହାର ବୈର ଓ ଘର୍ଷଣ ଏ ଦୁଇଟି ବନ୍ଦ ହୋଇଗଲା, ତା'ର ମୋକ୍ଷ ହୋଇଗଲା । ପ୍ରେମ ବାଧକ ନୁହେଁ, ବୈରୀ ଯାଏ ତେବେ ପ୍ରେମ ଉତ୍ପନ୍ନ ହୋଇଯାଏ ।

## କମନସେନ୍ସ, ଏଭ୍ରିହ୍ୱେୟାର ଏପ୍ଲିକେବଲ୍

କେହି ଆମ ସହିତ ଝଗଡ଼ା କରୁ କିନ୍ତୁ ଆମେ କାହା ସହିତ ଝଗଡ଼ା କରିବା ନାହିଁ, ଏପରି ରହିଲେ 'କମନସେନ୍ସ' ଉତ୍ପନ୍ନ ହେବ । କିନ୍ତୁ ଆମକୁ କାହା ସହିତ ଝଗଡ଼ା କରିବା ଉଚିତ୍ ନୁହେଁ, ଅନ୍ୟଥା 'କମନସେନ୍ସ' ଚାଲିଯିବ ! ନିଜ ତରଫରୁ ଘର୍ଷଣ ନହେବା ଉଚିତ୍ । ସାମ୍ନାବାଲାର ଘର୍ଷଣ ଦ୍ୱାରା ଆମଠାରେ 'କମନସେନ୍ସ' ଉତ୍ପନ୍ନ ହୋଇଥାଏ । ଆତ୍ମାର ଏ ଶକ୍ତି ଏପରି ଯେ ଘର୍ଷଣ ସମୟରେ କିପରି ବ୍ୟବହାର କରିବା ତାହାର ସମସ୍ତ ଉପାୟ ବତାଇ ଦିଏ ଏବଂ ଥରେ ଦେଖାଇ ଦେଲେ, ଆଉ ସେହି ଜ୍ଞାନ ଯାଏ ନାହିଁ । ଏପରି କରି କରି 'କମନସେନ୍ସ' ବଢ଼ିଚାଲେ ।

ଏହି କାନ୍ଥ ପାଇଁ ଓଲଟା ବିଚାର ଆସେ ତେବେ ଅସୁବିଧା ନାହିଁ, କାରଣ ଏକପକ୍ଷୀୟ କ୍ଷତି ଅଟେ । କିନ୍ତୁ କୌଣସି ଜୀବିତ ବ୍ୟକ୍ତି ପାଇଁ ଗୋଟିଏ ବି ଓଲଟା ବିଚାର ଆସେ ତେବେ ବିପଦ ଅଛି । ଉଭୟ ପକ୍ଷରୁ କ୍ଷତି ହେବ । କିନ୍ତୁ ଆମେ ଯଦି ତା'ର ପ୍ରତିକ୍ରମଣ କରିବା ତେବେ ସବୁ ଦୋଷ ଧୋଇହୋଇଯିବ । ଏଣୁ ଯେଉଁଠି-ଯେଉଁଠି ଘର୍ଷଣ ହେଉଛି, ସେଇଠି ପ୍ରତିକ୍ରମଣ କର, ତେବେ ଘର୍ଷଣ ସବୁ ଖତମ ହୋଇଯିବେ ।

ଯାହାର ଝଗଡ଼ା ହେବ ନାହିଁ, ତା'ର ତିନି ଜନ୍ମରେ ମୋକ୍ଷ ହୋଇଯିବ, ଏହାର ଗ୍ୟାରେଣ୍ଟି ମୁଁ ଦେଉଛି । ଝଗଡ଼ା ହୋଇଯାଏ, ତେବେ ପ୍ରତିକ୍ରମଣ କରିନେବ । ଝଗଡ଼ା ହେବ ହିଁ । ଯେ ପର୍ଯ୍ୟନ୍ତ ଏହି ବିକାରୀ କାରଣ ଅଛି, ସମ୍ବନ୍ଧ ଅଛି, ସେ ପର୍ଯ୍ୟନ୍ତ ଝଗଡ଼ା ହେବ ହିଁ ହେବ । ଏହା ହିଁ ଝଗଡ଼ାର ମୂଳ କାରଣ । ଯିଏ ବିଷୟକୁ ଜିତିଗଲା, ତା'କୁ କେହି ହରାଇ ପାରିବେ ନାହିଁ । କେହି ତା'ର ନାମ ମଧ୍ୟ ନେଇ ପାରିବେ ନାହିଁ । ତା'ର ପ୍ରଭାବ ପଡ଼େ ।



# ଯାହା ହେଲା ତାହା ନ୍ୟାୟ

## ପ୍ରକୃତି ତ' ସର୍ବଦା ନ୍ୟାୟୀ ଅଟେ

ପ୍ରକୃତିର ଯେଉଁ ନିୟମ, ସେଥିରେ ଗୋଟିଏ ମୁହୂର୍ତ୍ତ ପାଇଁ ମଧ୍ୟ ଅନ୍ୟାୟ ହୋଇ ନାହିଁ । ଏ ପ୍ରକୃତି, ଗୋଟିଏ ମୁହୂର୍ତ୍ତ ପାଇଁ ମଧ୍ୟ ଅନ୍ୟାୟୀ ହୋଇନାହିଁ । କୋର୍ଟରେ ଅନ୍ୟାୟ ହୋଇଥିବ କିନ୍ତୁ ପ୍ରକୃତି କେବେ ମଧ୍ୟ ଅନ୍ୟାୟୀ ହୋଇନାହିଁ ।

ଯଦି ପ୍ରକୃତିର ନ୍ୟାୟକୁ ବୁଝି ପାରିବ ଯେ, 'ଯାହା ହେଲା ତାହା ନ୍ୟାୟ' ତେବେ ତୁମେ ଏହି ଜଗତରୁ ମୁକ୍ତ ହୋଇପାରିବ ଅନ୍ୟଥା ପ୍ରକୃତିକୁ ତିଳେମାତ୍ର ମଧ୍ୟ ଅନ୍ୟାୟୀ ମନେ କରିବ ତେବେ ତାହା ହିଁ ତୁମ ପାଇଁ ଜଗତରେ ସମସ୍ୟାର କାରଣ । ପ୍ରକୃତିକୁ ନ୍ୟାୟୀ ମାନିବା ହିଁ ଜ୍ଞାନ ଅଟେ । 'ଯେପରି ଅଟେ ସେପରି' ଜାଣିବା, ଏହାର ନାମ ଜ୍ଞାନ ଏବଂ 'ଯେପରି ଅଟେ ସେପରି' ନଜାଣିବା ହିଁ ଅଜ୍ଞାନ ।

ଜଗତରେ ନ୍ୟାୟ ଖୋଜିବା ଦ୍ୱାରା ହିଁ ତ' ପୂରା ଦୁନିଆରେ ଲଢ଼େଇ ହୋଇଛି । ଜଗତ ନ୍ୟାୟ ସ୍ୱରୂପ ହିଁ ଅଟେ । ଏଣୁ ଏହି ଜଗତରେ ନ୍ୟାୟ ଖୋଜିବ ହିଁ ନାହିଁ । ଯାହା ହେଲା, ତାହା ନ୍ୟାୟ । ଯାହା ହୋଇଗଲା ତାହା ହିଁ ନ୍ୟାୟ । ନ୍ୟାୟ ଖୋଜୁଥିବାରୁ ଏହି କୋର୍ଟ ଆଦି ସବୁ ବନା ହୋଇଛି । ଆରେ ଭାଇ, ନ୍ୟାୟ ହେଉଥିବ ? ! ଏହା ବଦଳରେ 'କ'ଣ ହେଲା' ତାହା ଦେଖ । ତାହା ହିଁ ନ୍ୟାୟ । ନ୍ୟାୟ-ଅନ୍ୟାୟର ଫଳ, ତାହା ତ' ହିସାବ ଅନୁସାରେ ଆସେ ଏବଂ ଆମେ ତାହା ସହିତ ନ୍ୟାୟ ଜଏଣ୍ଟ କରିବା(ଯୋଡ଼ିବା) ପାଇଁ ଯାଆନ୍ତି, ପୁଣି କୋର୍ଟକୁ ହିଁ ଯିବାକୁ ପଡ଼ିବ ନା !

ତୁମେ କାହାକୁ ଗୋଟିଏ ଗାଳି ଦେଲ, ତେବେ ସେ ତୁମକୁ ଦୁଇ-ତିନୋଟି ଗାଳି ଦେଇଦେବ, କାରଣ ତା'ର ମନ ତୁମ ଉପରେ କ୍ରୋଧିତ ହୋଇଯାଏ । ସେତେବେଳେ ଲୋକେ କ'ଣ କୁହନ୍ତି ? ତୁ କାହିଁକି ତିନୋଟି ଗାଳି ଦେଲୁ, ସେ ତ' ଗୋଟିଏ ଗାଳି ଦେଇଥିଲା । ତେବେ ସେଥିରେ ନ୍ୟାୟ କ'ଣ ? ତା'ର ଆମକୁ ତିନୋଟି ଦେବାର ହିସାବ ଥିବ, ପୂର୍ବ ହିସାବ ପରିଶୋଧ କରନ୍ତି କି ନାହିଁ? ପ୍ରକୃତିର ନ୍ୟାୟ କ'ଣ ? ଯାହା ପୂର୍ବର ହିସାବ ଥାଏ ସେଗୁଡ଼ିକୁ ଏକତ୍ରିତ କରିଦିଏ । ଏବେ ଯଦି କୌଣସି ସ୍ତ୍ରୀ ନିଜ ସ୍ୱାମୀକୁ ହଇରାଣ କରୁଛି ତେବେ ତାହା ପ୍ରକୃତିର ନ୍ୟାୟ ଅଟେ । ତା' ସ୍ୱାମୀ ମନେ କରେ ଯେ ମୋ ସ୍ତ୍ରୀ ବହୁତ ଖରାପ ଆଉ ସ୍ତ୍ରୀ ମନେ କରେ ଯେ ସ୍ୱାମୀ ଖରାପ । ମାତ୍ର ଏହା ପ୍ରକୃତିର ନ୍ୟାୟ ହିଁ ଅଟେ ।

ଏହା ତ' ଏହି ଜନ୍ମର ଝାଳବୁହା ରୋଜଗାର, କିନ୍ତୁ ପୂର୍ବ ହିସାବ ସବୁ ତ' ଅଛି ନା ! ବାକିଖାତା ଅଛି ସେଥିପାଇଁ, ଅନ୍ୟଥା କେହି କେବେ ଆମର କିଛି ମଧ୍ୟ ନେଇ ପାରିବ ନାହିଁ । କାହାଠାରୁ କିଛି ନେବା, ଏପରି ଶକ୍ତି ହିଁ ନାହିଁ । ଏବଂ ନେଇ ଯିବା ତାହା ତ' ଆମର କିଛି ଆଗ-ପଛର ହିସାବ ଅଟେ । ଏହି ଦୁନିଆରେ ଏପରି କେହି ଜନ୍ମ ହୋଇନାହିଁ ଯିଏ କାହାର କିଛି କରିଦେଇ ପାରିବ । ଏତେ ନିୟମଯୁକ୍ତ ଏହି ଜଗତ ଅଟେ ।

## କାରଣ ଜଣା ପଡ଼େ, ପରିଣାମରୁ

ଏ ସବୁ ରେଜଲ୍ଟ ଅଟେ । ଯେପରି ପରୀକ୍ଷାର ରେଜଲ୍ଟ ଆସେ, ମ୍ୟାଥ୍‌ମେଟିକ୍‌ସରେ ଶହେ ନମ୍ବରରୁ ପଞ୍ଚାନବେ ଏବଂ ଇଂରାଜୀରେ ଶହେ ନମ୍ବରରୁ ପଚିଶ ନମ୍ବର ଆସିଛି । ତେବେ କ'ଣ ଆମକୁ ଜଣାପଡ଼େ ନାହିଁ ଯେ ଏଥିରେ ଭୁଲ କେଉଁଠି ରହିଗଲା ? ଏହି ପରିଣାମରୁ, କେଉଁ କାରଣରୁ ଭୁଲ ହେଲା ତାହା ଆମକୁ ଜଣା ପଡ଼େ କି ନାହିଁ ? ଏ ସବୁ ସଂଯୋଗ ଯାହା ଏକାଠି ହୁଅନ୍ତି, ସେସବୁ ପରିଣାମ ଅଟେ । ଏବଂ ସେହି ପରିଣାମରୁ କ'ଣ କାରଣ ଥିଲା, ତାହା ମଧ୍ୟ ଆମକୁ ଜଣା ପଡ଼ିଯାଏ ।

ଏହି ରାସ୍ତାରେ ସବୁ ଲୋକଙ୍କର ଯିବା-ଆସିବା ହୁଏ ଆଉ ସେହି ରାସ୍ତାରେ ଏକ କଣ୍ଟା ପଡ଼ିଥିବ, ବହୁତ ଲୋକଙ୍କର ଯିବା-ଆସିବା ହୁଏ କିନ୍ତୁ କଣ୍ଟା ଯେମିତିକୁ ସେମିତି ପଡ଼ି ରହିଥାଏ । ଯଦିଓ ତୁମେ କେବେ ମଧ୍ୟ ବିନା ଜୋତା-ଚପଲରେ ଘରୁ ବାହାର ନାହିଁ, କିନ୍ତୁ ସେଦିନ କାହା ପାଖକୁ ଯାଇଥିଲ ଆଉ କେହି ଚୋର ଚୋର ବୋଲି ଚିତ୍କାର କରିବାରୁ ତୁମେ ବିନା ଚପଲରେ ଦୌଡ଼ି ଗଲ ଏବଂ କଣ୍ଟା ତୁମ ପାଦରେ ପଶିଗଲା । ତେବେ ତାହା ତୁମର ହିସାବ !

ଯଦି କେହି ଦୁଃଖ ଦିଏ ତାହାକୁ ଜମା କରିନିଅ । ଯାହା ତୁମେ ପୂର୍ବରୁ ଦେଇଥାଅ ତାହା ହିଁ ପୁନର୍ବାର ଜମା କରିବାକୁ ପଡ଼େ । କାହିଁକିନା ବିନା କାରଣରେ କେହି କାହାରିକୁ ଦୁଃଖ ପହଞ୍ଚାଇ ପାରିବ, ଏପରି ଏଠି ନିୟମ ହିଁ ନାହିଁ । ତାହା ପଛରେ କଜ୍ (କାରଣ) ନିଶ୍ଚିତ ଅଛି । ଏଥିପାଇଁ ଜମା କରିନିଅ ।

## ଭଗବାନଙ୍କଠାରେ କିପରି ହୋଇଥାଏ ?

ଭଗବାନ ନ୍ୟାୟ ସ୍ୱରୂପ ନୁହଁନ୍ତି ଏବଂ ଅନ୍ୟାୟ ସ୍ୱରୂପ ମଧ୍ୟ ନୁହଁନ୍ତି । କାହାକୁ ଦୁଃଖ ନହେଉ, ଏହା ହିଁ ଭଗବାନଙ୍କ ଭାଷା । ନ୍ୟାୟ-ଅନ୍ୟାୟ ତ' ଲୋକଭାଷା ଅଟେ ।

ଚୋର, ଚୋରି କରିବାକୁ ଧର୍ମ ମାନେ, ଦାନୀ, ଦାନ ଦେବାକୁ ଧର୍ମ ମାନେ । ଏସବୁ ଲୋକଭାଷା, ଭଗବାନଙ୍କ ଭାଷା ନୁହେଁ । ଭଗବାନଙ୍କଠାରେ ଏମିତି ସେମିତି କିଛି ହିଁ ନାହିଁ । ଭଗବାନଙ୍କଠାରେ କେବଳ ଏତିକି ହିଁ ଥାଏ ଯେ, 'କୌଣସି ଜୀବକୁ ଦୁଃଖ ନହେଉ, ଏହାହିଁ ମୋର ଆଜ୍ଞା !'

## ନିଜଦୋଷ ଦେଖାଏ ଅନ୍ୟାୟ

କେବଳ ନିଜ ଦୋଷ ପାଇଁ ସମ୍ପୂର୍ଣ୍ଣ ଜଗତ ଅନିୟମିତ ଲାଗେ । ଗୋଟିଏ କ୍ଷଣ ପାଇଁ ମଧ୍ୟ ଅନିୟମିତ ହୋଇନାହିଁ । ସମ୍ପୂର୍ଣ୍ଣ ନ୍ୟାୟରେ ହିଁ ରହିଥାଏ । ଏଠାକାର କୋର୍ଟର ନ୍ୟାୟରେ ପାତର-ଅନ୍ତର ହୋଇପାରେ, ଭୁଲ ହୋଇପାରେ, କିନ୍ତୁ ପ୍ରକୃତିର ନ୍ୟାୟରେ କେବେ ମଧ୍ୟ କୌଣସି ଭୁଲ ହୁଏନାହିଁ ।

ଗୋଟିଏ କ୍ଷଣ ପାଇଁ ମଧ୍ୟ ନ୍ୟାୟରେ ପାତର-ଅନ୍ତର ହୁଏନାହିଁ । ଯଦି ଅନ୍ୟାୟୀ ହୋଇଥାନ୍ତା ତେବେ କେହି ମୋକ୍ଷରେ ଯାଇପାରନ୍ତା ହିଁ ନାହିଁ । କୁହନ୍ତି ଯେ ଭଲ ଲୋକମାନେ ହଇରାଣ କାହିଁକି ହୁଅନ୍ତି ? କିନ୍ତୁ ଲୋକମାନେ ଏପରି କୌଣସି ସମସ୍ୟା ସୃଷ୍ଟି କରିପାରିବେ ନାହିଁ । କାରଣ ନିଜେ ଯଦି କୌଣସି କଥାରେ ହସ୍ତକ୍ଷେପ ନ କର, ତେବେ ଏପରି କୌଣସି ଶକ୍ତି ନାହିଁ ଯିଏ ତୁମର ନାମ ନେଇପାରିବ । ନିଜେ ହସ୍ତକ୍ଷେପ କରିଛ, ଏଥିପାଇଁ ଏହି ସବୁ ସମସ୍ୟା ସୃଷ୍ଟି ହୋଇଛି ।

## ଜଗତ ନ୍ୟାୟ ସ୍ୱରୂପ

ଏହି ଜଗତ କୌଣସି କାହାଣୀ ନୁହେଁ । ଜଗତ ନ୍ୟାୟ ସ୍ୱରୂପ ଅଟେ । ପ୍ରକୃତି କେବେ ମଧ୍ୟ ଅନ୍ୟାୟ କରିନାହିଁ । ପ୍ରକୃତି କେଉଁଠାରେ କାହାକୁ ଖଣ୍ଡିଆ କରିଦିଏ, ଏକ୍ସିଡେ଼ଣ୍ଟ ହୋଇଯାଏ, ଏସବୁ ନ୍ୟାୟ ସ୍ୱରୂପ ଅଟେ । ପ୍ରକୃତି କେବେ ମଧ୍ୟ ନ୍ୟାୟ ବାହାରକୁ ଯାଇନାହିଁ । ଏ ସମସ୍ତେ ଅକାରଣରେ କିଛି ନ ବୁଝି ଯାହାଇଛା ତାହା କୁହନ୍ତି ଆଉ ଜୀବନ ଜିଇଁବାର କଳା ମଧ୍ୟ ଜଣା ନାହିଁ, ଆଉ ଯଦି ଦେଖିବ ତେବେ ଚିନ୍ତା ହିଁ ଚିନ୍ତା । ଏଣୁ ଯାହା ହେଲା ତାହାକୁ ନ୍ୟାୟ କୁହ ।

'ଯାହା ହେଲା ତାହା ନ୍ୟାୟ' ବୁଝିଗଲେ ପୂରା ସଂସାର ପାରିହୋଇଯିବ । ଏହି ଦୁନିଆରେ ଗୋଟିଏ ସେକେଣ୍ଡ ମଧ୍ୟ ଅନ୍ୟାୟ ହୁଏନାହିଁ । ନ୍ୟାୟ ହିଁ ହେଉଛି । କିନ୍ତୁ ବୁଦ୍ଧି ଆମକୁ ଫସାଇ ଦିଏ ଯେ ଏହାକୁ ନ୍ୟାୟ କିପରି କହିପାରିବା ? ଏଣୁ ମୁଁ ମୂଳ କଥା

କହିବାକୁ ଚାହୁଁଛି ଯେ ଏହା ପ୍ରକୃତିର ଅଟେ ଏବଂ ବୁଦ୍ଧିରୁ ତୁମେ ଅଲଗା ହୋଇଯାଅ । ବୁଦ୍ଧି ଏଥିରେ ଫସାଇ ଦିଏ । ଥରେ ବୁଝିନେବା ପରେ ବୁଦ୍ଧିର ମାନ ନାହିଁ । ଯାହା ହେଲା ତାହା ନ୍ୟାୟ । କୋର୍ଟର ନ୍ୟାୟରେ ଭୁଲ-ଭଟକା ହୋଇପାରେ, ଓଲଟା ସିଧା ହୋଇଯାଏ କିନ୍ତୁ ଏହି ନ୍ୟାୟରେ କୌଣସି ପାତର-ଅନ୍ତର ନାହିଁ ।

ନ୍ୟାୟ ଖୋଜି ଖୋଜି ତ' ଦମ୍ ବାହାରି ଗଲାଣି । ମଣିଷ ମନେମନେ ଭାବେ ଯେ ମୁଁ ଏହାର କ'ଣ ବିଗାଡ଼ି ଥିଲି ଯେ ସେ ମୋର ବିଗାଡୁଛି । ନ୍ୟାୟ ଖୋଜିବାକୁ ଯାଇ ତ' ଏ ସମସ୍ତଙ୍କୁ ମାଡ଼ ପଡ଼ିଛି । ଏଣୁ ନ୍ୟାୟ ଖୋଜ ନାହିଁ । ନ୍ୟାୟ ଖୋଜିବାରୁ ହିଁ ଏ ସମସ୍ତଙ୍କର ମାଡ଼ ଖାଇଖାଇ ଚିହ୍ନ ହୋଇଗଲାଣି, ତଥାପି ଶେଷରେ ତାହାକୁ ତାହା ହିଁ ହେଲା । ଶେଷରେ ଯାହା ଆସିବାର ଥାଏ ତାହା ଆସିଯାଏ । ତେବେ ପୁଣି ପ୍ରଥମରୁ କାହିଁକି ନବୁଝିବା ? ଏହାତ' କେବଳ ଅହଂକାରର ଦଖଲ ଅଟେ !

## ବିକଳ୍ପର ଅନ୍ତ, ଏହାହିଁ ମୋକ୍ଷ ମାର୍ଗ

ବୁଦ୍ଧି ଯେତେବେଳେ ମଧ୍ୟ ବିକଳ୍ପ ଦେଖାଇବ ନା, ସେତେବେଳେ କହିଦେବ, ଯାହା ହେଲା ତାହା ନ୍ୟାୟ । ବୁଦ୍ଧି ନ୍ୟାୟ ଖୋଜେ ଯେ ଇଏ ମୋ ଠାରୁ ଛୋଟ ଆଉ ମୋର ମର୍ଯ୍ୟାଦା ରଖୁନାହିଁ । ସେ ମର୍ଯ୍ୟାଦା ରଖିଲେ ନ୍ୟାୟ ଏବଂ ନରଖିଲେ ମଧ୍ୟ ନ୍ୟାୟ । ବୁଦ୍ଧି ଯେତେ ନିର୍ବିବାଦ ହେବ,ପରେ ସେତିକି ହିଁ ଆମେ ନିର୍ବିକଳ୍ପ ହେବା !

ନ୍ୟାୟ ଖୋଜିବାକୁ ବାହାରିବା ତେବେ ବିକଳ୍ପ ବଢ଼ିଚାଲିବ ଏବଂ ପ୍ରାକୃତିକ ନ୍ୟାୟ ବିକଳ୍ପଗୁଡ଼ିକୁ ନିର୍ବିକଳ୍ପ କରିଦିଏ । ଯାହା ହୋଇ ସାରିଛି, ତାହାହିଁ ନ୍ୟାୟ ଅଟେ । ଆଉ ଏହା ସତ୍ତ୍ୱେ ପାଞ୍ଚଜଣଙ୍କ ପଞ୍ଚାୟତ ଯାହା କହେ ତାହା ମଧ୍ୟ ତା'ର ବିରୁଦ୍ଧରେ ଚାଲିଯାଏ, ସେତେବେଳେ ସେ ସେହି ନ୍ୟାୟକୁ ମଧ୍ୟ ମାନେ ନାହିଁ, କାହାରି କଥା ଶୁଣେ ନାହିଁ । ଏଣୁ ପୁଣି ବିକଳ୍ପ ବଢ଼ିଯାଏ । ନିଜର ଆଖ-ପାଖରେ କେବଳ ଜାଲ ବୁଣେ ତଥାପି କିଛି ମଧ୍ୟ ପ୍ରାପ୍ତ ହୁଏ ନାହିଁ । ବହୁତ ଦୁଃଖୀ ହୋଇଯାଏ ! ଏହା ବଦଳରେ ପ୍ରାରମ୍ଭରୁ ହିଁ ଶ୍ରଦ୍ଧା ରଖ ଯେ 'ଯାହା ହେଲା ତାହା ନ୍ୟାୟ' ।

ପ୍ରକୃତି ସର୍ବଦା ନ୍ୟାୟ ହିଁ କରେ । ନିରନ୍ତର ନ୍ୟାୟ ହିଁ କରୁଛି କିନ୍ତୁ ସେ ପ୍ରମାଣ ଦେଇପାରେ ନାହିଁ । ପ୍ରମାଣ ତ' 'ଜ୍ଞାନୀ' ଦିଅନ୍ତି ଯେ ଏହା କିପରି ନ୍ୟାୟ ? କିପରି ହେଲା, ଏହା 'ଜ୍ଞାନୀ' ହିଁ କହିଥାନ୍ତି । ତା'କୁ( ବୁଦ୍ଧିକୁ) ସନ୍ତୁଷ୍ଟ କରି ଦେଲେ ଯାଇ ସମାଧାନ ଆସେ । ନିର୍ବିକଳ୍ପ ହୋଇଗଲେ ସମାଧାନ ଆସେ ।

❖ ❖ ❖

# ଯିଏ ଭୋଗେ ତା'ର ଭୁଲ

## ପ୍ରକୃତିର ନ୍ୟାୟାଳୟରେ...

ଏହି ଜଗତର ନ୍ୟାୟାଧୀଶ ତ' ପ୍ରତ୍ୟେକ ଜାଗାରେ ଥା'ନ୍ତି କିନ୍ତୁ କର୍ମ ଜଗତର ପ୍ରାକୃତିକ ନ୍ୟାୟାଧୀଶ ତ' ଜଣେ ହିଁ, 'ଯିଏ ଭୋଗେ ତା'ର ଭୁଲ୍' । ଏହି ଗୋଟିଏ ନ୍ୟାୟ, ଯାହା ଦ୍ୱାରା ସମ୍ପୂର୍ଣ୍ଣ ଜଗତ ଚାଲୁଛି ଏବଂ ଭ୍ରାନ୍ତିର ନ୍ୟାୟ ଦ୍ୱାରା ସମ୍ପୂର୍ଣ୍ଣ ସଂସାର ଛିଡ଼ା ହୋଇଅଛି ।

ଗୋଟିଏ ମୁହୂର୍ତ୍ତ ପାଇଁ ଜଗତ ନ୍ୟାୟରୁ ବାହାରେ ନଥାଏ । ଯାହାକୁ ପୁରସ୍କାର ଦେବାର ଥାଏ, ତା'କୁ ଦିଏ । ଯାହାକୁ ଦଣ୍ଡ ଦେବାର ଥାଏ, ତା'କୁ ଦଣ୍ଡ ଦିଏ । ଜଗତ ନ୍ୟାୟରୁ ବାହାରେ ନଥାଏ, ନ୍ୟାୟରେ ହିଁ ଥାଏ, ସମ୍ପୂର୍ଣ୍ଣ ନ୍ୟାୟପୂର୍ବକ ହିଁ ଅଟେ । କିନ୍ତୁ ସାମ୍ନାବ୍ୟକ୍ତିର ଏହା ଦୃଷ୍ଟିଗୋଚର ହୁଏ ନାହିଁ, ଏଣୁ ବୁଝିପାରେ ନାହିଁ। ଯେବେ ଦୃଷ୍ଟି ନିର୍ମଳ ହେବ, ସେବେ ନ୍ୟାୟ ଦେଖାଯିବ । ଯେ ପର୍ଯ୍ୟନ୍ତ ସ୍ୱାର୍ଥ ଦୃଷ୍ଟି ଥିବ, ସେ ପର୍ଯ୍ୟନ୍ତ ନ୍ୟାୟ କିପରି ଦେଖାଯିବ ?

## ଆମକୁ କାହିଁକି ଭୋଗିବାକୁ ପଡ଼ିଲା ?

ଆମକୁ ଦୁଃଖ କାହିଁକି ଭୋଗିବାକୁ ପଡ଼ିଲା,ଏହା ଖୋଜି ବାହାରକର ନା ? ଏହା ତ' ଆମେ ନିଜର ହିଁ ଭୁଲରେ ବାନ୍ଧି ହୋଇଛନ୍ତି । ଲୋକମାନେ ଆସି ବାନ୍ଧି ନାହାନ୍ତି । ସେହି ଭୁଲ ଖତମ ହୋଇଯାଏ ତେବେ ପୁଣି ମୁକ୍ତି । ଆଉ ବାସ୍ତବରେ ତ' ମୁକ୍ତ ହିଁ ଅଛୁ, କିନ୍ତୁ ଭୁଲ ଯୋଗୁଁ ବନ୍ଧନ ଭୋଗୁଛେ ।

ଜଗତର ବାସ୍ତବିକତାର ରହସ୍ୟଜ୍ଞାନ ଲୋକଙ୍କ ଲକ୍ଷ୍ୟରେ ହିଁ ନାହିଁ ଆଉ ଯେଉଁଥିପାଇଁ ଭଟକିବାକୁ ପଡୁଛି, ସେହି ଅଜ୍ଞାନ-ଜ୍ଞାନ ସମ୍ବନ୍ଧରେ ତ' ସମସ୍ତଙ୍କୁ ଜଣାଥାଏ । ଏହି ପକେଟ୍‌ମାର୍ ହୁଏ, ସେଥିରେ ଭୁଲ କାହାର ? ଏ ଭାଇର ପକେଟ୍‌ମାର ହେଲାନାହିଁ ଆଉ ତୁମର ହିଁ କାହିଁକି ହେଲା ? ଦୁହିଁଙ୍କ ମଧ୍ୟରୁ ଏବେ କିଏ ଭୋଗୁଛି ? 'ଯିଏ ଭୋଗେ ତା'ର ଭୁଲ !'

## ନିଜର ଭୁଲ ପାଇଁ ଭୋଗୁଛେ

ଯିଏ ଦୁଃଖ ଭୋଗେ, ତା'ର ଭୁଲ ଏବଂ ଯିଏ ସୁଖ ଭୋଗେ ତାହା ତା'ର

ପୁରସ୍କାର । କିନ୍ତୁ ଭ୍ରାନ୍ତିର କାନୁନ୍ ନିମିତ୍ତକୁ ଧରେ । ଭଗବାନଙ୍କ କାନୁନ, ରିୟଲ କାନୁନ ତ' ଯାହାର ଭୂଲ୍ ଥିବ, ତା'କୁ ହିଁ ଧରିବ । ଏହି ନିୟମ ଏକଜାକ୍ଟ(ସଠିକ୍) ଅଟେ ଏବଂ ସେଥିରେ କେହି ପରିବର୍ତ୍ତନ କରି ପାରିବ ହିଁ ନାହିଁ । ଜଗତରେ ଏପରି କୌଣସି ନିୟମ ନାହିଁ ଯାହା କାହାକୁ *ଭୋଗବଟା* (ସୁଖ-ଦୁଃଖ ପ୍ରଭାବ) ଦେଇ ପାରିବ ।

ଆମର କୌଣସି ଭୁଲ ଥିବ ତେବେ ତ' ଅନ୍ୟମାନେ କହିବେ ନା ? ଏଣୁ ଭୁଲ ଶେଷ କରିଦିଅ ନା ! ଏହି ଜଗତରେ କୌଣସି ଜୀବ କୌଣସି ଜୀବକୁ କଷ୍ଟ ଦେଇ ପାରିବ ନାହିଁ, ଏପରି ସ୍ୱତନ୍ତ୍ର ଅଟେ, ଆଉ ଯିଏ କଷ୍ଟ ଦିଏ ତାହା ପୂର୍ବରୁ ଯେଉଁ ହସ୍ତକ୍ଷେପ କରିଥିଲେ ତାହାର ହିଁ ପରିଣାମ ଅଟେ । ଏଣୁ ଭୁଲ ଖତମ୍ କରିଦିଅ ପରେ ହିସାବ ରହିବ ନାହିଁ ।

ଜଗତ ଦୁଃଖ ଭୋଗିବା ପାଇଁ ହୋଇନାହିଁ, ସୁଖ ଭୋଗିବା ପାଇଁ ହୋଇଛି । ଯାହାର ଯେତିକି ହିସାବ ଥିବ ସେତିକି ହିଁ ହୁଏ । କିଛି ଲୋକ କେବଳ ସୁଖ ହିଁ ଭୋଗନ୍ତି, ତାହା କିପରି ? କିଛି ଲୋକ କେବଳ ଦୁଃଖ ହିଁ ଭୋଗନ୍ତି, ତାହା କିପରି ? କାରଣ ନିଜେ ହିଁ ସେମିତି ହିସାବ ନେଇ ଆସିଥାଏ । ଯେଉଁ ଦୁଃଖ ନିଜକୁ ଭୋଗିବାକୁ ପଡ଼େ, ତାହା ନିଜର ହିଁ ଦୋଷ ଅଟେ, ଅନ୍ୟ କାହାର ନୁହେଁ । ଯିଏ ଦୁଃଖ ଦିଏ ତା'ର କିଛି ଭୁଲ ନଥାଏ । ଯିଏ ଦୁଃଖ ଦିଏ ତା'ର ଭୁଲ ସଂସାରରେ ଦେଖାଯାଏ ଏବଂ ଯିଏ ତାହାକୁ ଭୋଗେ ତା'ର ଭୁଲ ଭଗବାନଙ୍କ କାନୁନରେ ହୁଏ ।

## ନିଜର ହିଁ ଭୁଲର ପରିଣାମ

ଯେବେ କେବେ ମଧ୍ୟ ଆମକୁ କିଛି ଭୋଗିବାକୁ ପଡ଼ିଥାଏ, ତାହା ଆମର ହିଁ ଭୁଲର ପରିଣାମ । ନିଜର ଭୁଲ ନଥିଲେ ଆମକୁ ଭୋଗିବାକୁ ପଡ଼ନ୍ତାନି । ଏହି ଜଗତରେ ଏପରି କେହି ମଧ୍ୟ ନାହିଁ ଯିଏ ଆମକୁ କିଞ୍ଚିତମାତ୍ର ମଧ୍ୟ ଦୁଃଖ ଦେଇପାରିବ ଆଉ ଯଦି କେହି ଦୁଃଖ ଦିଏ, ତେବେ ତାହା ନିଜର ହିଁ ଭୁଲ ଅଟେ । ସାମ୍ନା ବ୍ୟକ୍ତିର ଦୋଷ ନାହିଁ, ସେ ତ' ନିମିତ୍ତ ମାତ୍ର । ଏଣୁ 'ଯିଏ ଭୋଗେ ତା'ର ଭୁଲ' ।

କେହି ସ୍ୱାମୀ ଓ ସ୍ତ୍ରୀ ପରସ୍ପର ମଧ୍ୟରେ ବହୁତ ଝଗଡ଼ା କରୁଛନ୍ତି, ଆଉ ଯେବେ ଦୁହେଁ ଶୋଇଯାନ୍ତି, ପରେ ତୁମେ ଚୁପ୍-ଚୁପ୍ ଯାଇ ଦେଖିବ ତେବେ ସ୍ତ୍ରୀ ଗଭୀର ନିଦରେ ଶୋଇଥିବ ଆଉ ସ୍ୱାମୀ ବାରମ୍ବାର କଡ଼ ଲେଉଟୁଥିବ, ତେବେ

ବୁଝିନେବ ଯେ ସ୍ୱାମୀର ସବୁ ଭୁଲ, କାରଣ ସ୍ତ୍ରୀ ଭୋଗୁନାହିଁ । ଯାହାର ଭୁଲ ଥାଏ ସେ ହିଁ ଭୋଗେ ଆଉ ଯଦି ସ୍ୱାମୀ ଶୋଇଥାନ୍ତା ଆଉ ସ୍ତ୍ରୀ ଚାହିଁଥାନ୍ତା, ତା'ହେଲେ ଜାଣିବ ସ୍ତ୍ରୀର ହିଁ ଭୁଲ । 'ଯିଏ ଭୋଗେ ତା'ର ଭୁଲ' । ପୁରା ଜଗତ ନିମିତ୍ତକୁ ହିଁ ଦୋଷ ଦିଏ ।

## ଭଗବାନଙ୍କ କାନୁନ କ'ଣ ?

ଭଗବାନଙ୍କ କାନୁନ ତ' କ'ଣ କୁହେ ଯେ ଯେଉଁ କ୍ଷେତ୍ରରେ ଯେଉଁ ସମୟରେ ଯିଏ ଭୋଗୁଛି ସେ ନିଜେ ଦୋଷୀ । କାହାର ପକେଟ୍‌ମାର୍ ହେଲେ ପକେଟ୍‌ମାର୍ କରିଥିବା ବ୍ୟକ୍ତି ପାଇଁ ତ' ଆନନ୍ଦର କଥା,ସେ ତ' ଜଲେବି ଖାଉଥିବ, ହୋଟେଲରେ ଚାହା-ଜଳଖିଆ କରୁଥିବ ଏବଂ ଠିକ୍ ସେହି ସମୟରେ ଯାହାର ପକେଟ୍‌ମାର୍ ହୋଇଥାଏ, ସେ ଭୋଗୁଥିବ । ଏଣୁ ଭୋଗିବା ଲୋକର ଭୁଲ । ସେ ପୂର୍ବରୁ କେବେ ଚୋରି କରିଥିବ, ଏଣୁ ଆଜି ଧରାପଡ଼ିଗଲା ଏବଂ ପକେଟ୍‌ମାର୍ କରିଥିବା ଲୋକଟି ଯେବେ ଧରାପଡ଼ିବ ସେତେବେଳେ ସମସ୍ତେ ତା'କୁ ଚୋର କହିବେ ।

ସମ୍ପୂର୍ଣ୍ଣ ଜଗତ ସାମ୍ନାବ୍ୟକ୍ତିର ଭୁଲ ଦେଖେ । ନିଜେ ଭୋଗେ କିନ୍ତୁ ଭୁଲ ଅନ୍ୟର ଦେଖେ । ଓଲଟା ଏହାଦ୍ୱାରା ତ' ଦୋଷ ଦୁଇଗୁଣା ହୋଇଯାଏ ଏବଂ ବ୍ୟବହାର ମଧ୍ୟ ବିଗିଡ଼ି ଯାଏ । ଏହି କଥାକୁ ବୁଝିଗଲେ ସମସ୍ୟା କମିକମି ଯିବ ।

ଏହି ଜଗତର ନିୟମ ଏପରି ଯେ ଆଖିକୁ ଦେଖାଯାଏ, ତା'କୁ ଭୁଲ ବୋଲି କୁହନ୍ତି । କିନ୍ତୁ ପ୍ରକୃତିର ନିୟମ ଏପରି ଯେ ଯିଏ ଭୋଗେ ତା'ର ଭୁଲ ଅଟେ ।

କାହାରିକୁ କିଞ୍ଚିତମାତ୍ର ଦୁଃଖ ଦେବା ନାହିଁ ଏବଂ କେହି ଆମକୁ ଦୁଃଖ ଦେଉଛି ତେବେ ତାହାକୁ ଜମା କରିନେଲେ ଆମର ବହିଖାତାର ହିସାବ ପୂରା ହୋଇଯିବ । କାହାରିକୁ ଦେବ ନାହିଁ, ନୂଆ ବ୍ୟବସାୟ ଆରମ୍ଭ କରିବ ନାହିଁ ଏବଂ ଯାହା ପୁରୁଣା ଅଛି ତାହାର ସମାଧାନ କରିନେଲ, ମାନେ ହିସାବ ପୂରା ହୋଇଗଲା ।

## ଉପକାରୀ, କର୍ମରୁ ଯିଏ ମୁକ୍ତି ଦେଇଥାନ୍ତି

ଜଗତରେ କାହାରି ଦୋଷ ନାହିଁ, ଦୋଷ ବାହାର କରୁଥିବା ବ୍ୟକ୍ତିର ଦୋଷ ଅଟେ । ଜଗତରେ କେହି ଦୋଷୀ ହିଁ ନାହାନ୍ତି । ସବୁ ନିଜ ନିଜର କର୍ମର ଉଦୟ ଅଟେ । ଯାହା ମଧ୍ୟ ଭୋଗୁଛନ୍ତି ତାହା ଆଜିର ଦୋଷ ନୁହେଁ । ପୂର୍ବ ଜନ୍ମର କର୍ମର ଫଳସ୍ୱରୂପ ଏସବୁ ହେଉଛି । ଆଜି ତ' ସେ ପଶ୍ଚାତାପ କରୁଥାଇପାରେ କିନ୍ତୁ

କଣ୍ଟ୍ରାକ୍ଟ(ଚୁକ୍ତି) ହୋଇସାରିଛି, ତ' ଏବେ କ'ଣ କରିହେବ ? ତାହାକୁ ନ ଭୋଗିଲା ପର୍ଯ୍ୟନ୍ତ ଉପାୟ ନାହିଁ ।

ଶାଶୁ, ବୋହୂ ସହିତ ଝଗଡ଼ା କରୁଥିବ, ତଥାପି ବୋହୂ ମଜାରେ ଥିବ ଏବଂ ଶାଶୁକୁ ହିଁ ଭୋଗିବାକୁ ପଡ଼େ ତେବେ ଭୁଲ ଶାଶୁର ଅଟେ । ବଡ଼ ଯାଆକୁ ଉସ୍‌କାଇବା ପରେ ଯଦି ନିଜକୁ ଭୋଗିବାକୁ ପଡ଼େ ତେବେ ତାହା ନିଜର ଭୁଲ ଏବଂ କିଛି ନ କରିବା ପରେ ମଧ୍ୟ ତଥାପି ଯଦି ସେ *ଭୋଗବଟା* ଦିଏ ତେବେ ପୂର୍ବ ଜନ୍ମର କିଛି ହିସାବ ବାକି ଥିବ, ତାହା ପୂରା କଲା । ଏହି ଜଗତରେ ବିନା ହିସାବରେ ଆଖିରେ ଆଖି ମଧ୍ୟ ମିଶେ ନାହିଁ, ତେବେ ବାକି ସବୁ କ'ଣ ବିନା ହିସାବରେ ହେଉଥିବ ? ତୁମେ ଯାହାକୁ ଯେତିକି ଦେଇଥିବ ସେତିକି ହିଁ ଫେରସ୍ତ ମିଳିବ, ସେତେବେଳେ ତୁମେ ଖୁସିର ସହ ଗ୍ରହଣ କରିନିଅ, କି ଏବେ ମୋର ହିସାବ ପୂରା ହେବ । ନହେଲେ ଯଦି ଭୁଲ କରିବ ତେବେ ପୁଣି ଭୋଗିବାକୁ ହିଁ ପଡ଼ିବ ।

ନିଜର ହିଁ ଭୁଲର ଦଣ୍ଡ ଭୋଗୁଛନ୍ତି । ଯିଏ ପଥର ଫିଙ୍ଗିଲା ତା'ର ଭୁଲ ନାହିଁ, ଯାହା ଦେହରେ ପଥର ବାଜିଲା ତା'ର ଭୁଲ । ତୁମ ଆଖପାଖରେ ଥିବା ପିଲାମାନଙ୍କ ଦ୍ୱାରା ଯେ କୌଣସି ଭୁଲ ବା ଦୁଷ୍କୃତ୍ୟ ହେଉନା କାହିଁକି, ଯଦି ତାହାର ପ୍ରଭାବ ତୁମ ଉପରେ ନ ପଡୁଛି ତେବେ ତୁମର ଭୁଲ ନାହିଁ ଆଉ ଯଦି ତୁମ ଉପରେ ପ୍ରଭାବ ପଡ଼େ ତା' ହେଲେ ତୁମର ହିଁ ଭୁଲ,ଏହା ନିଶ୍ଚିତ ରୂପେ ବୁଝିନିଅ ।

## ଏପରି ପୃଥକୀକରଣ ତ' କର

ଭୁଲ କାହାର ? ତେବେ କହିବା କିଏ ଭୋଗୁଛି, ଏହାର ଖବର ନିଅ । ଚାକର ହାତରେ ଦଶଟି ଗ୍ଲାସ୍ ଭାଙ୍ଗିଗଲେ ଏହାର ପ୍ରଭାବ ଘର ଲୋକଙ୍କ ଉପରେ ପଡ଼ିବ କି ନାହିଁ? ଏଥିରେ ଘରେ ଥିବା ପିଲାମାନଙ୍କୁ ତ' କିଛି ଭୋଗିବାକୁ ପଡ଼େ ନାହିଁ, କିନ୍ତୁ ତାଙ୍କ ମା-ବାପା ବ୍ୟସ୍ତ ହୋଇଯାନ୍ତି । ମା ମଧ୍ୟ କିଛି ସମୟ ପରେ ଆରାମରେ ଶୋଇଯାନ୍ତି, କିନ୍ତୁ ବାପା ହିସାବ କରୁଥାନ୍ତି, ଯେ ପଚାଶ ଟଙ୍କାର କ୍ଷତି ହୋଇଗଲା । ସେ ଅଧିକ ଏଲର୍ଟ(ସଜାଗ) ଥାଆନ୍ତି, ଏଣୁ ଅଧିକ ଭୋଗିବେ । 'ଯିଏ ଭୋଗେ ତା'ର ଭୁଲ' । ଯିଏ ଏତିକି ପୃଥକୀକରଣ କରିକରି ଆଗକୁ ବଢ଼ି ଚାଲିବ, ସେ ସିଧା ମୋକ୍ଷରେ ପହଞ୍ଚିଯିବ ।

**ପ୍ରଶ୍ନକର୍ତ୍ତା :** କିଛି ଲୋକ ଏପରି ଥାଆନ୍ତି ଯେ ଆମେ ଯେତେ ଭଲ କଲେ ମଧ୍ୟ ସେମାନେ ବୁଝନ୍ତି ହିଁ ନାହିଁ ।

**ଦାଦାଶ୍ରୀ :** ସାମ୍ନାବ୍ୟକ୍ତି ନ ବୁଝିଲେ ତାହା ନିଜର ହିଁ ଭୁଲର ପରିଣାମ । ଯେଉଁମାନେ ଅନ୍ୟର ଦୋଷ ଦେଖନ୍ତି, ସେମାନେ ସମ୍ପୂର୍ଣ୍ଣ ଭୁଲ ଅଟନ୍ତି । ନିଜର ଭୁଲ ଦ୍ୱାରା ହିଁ ନିମିତ୍ତ ମିଳେ । ଏ ତ' ଜୀବିତ ନିମିତ୍ତ ହୋଇଥିବାରୁ ତାଙ୍କୁ ମାରିବା ପାଇଁ ଦୌଡ଼ୁଛନ୍ତି ଆଉ ଯଦି କଣ୍ଟା ଫୋଡ଼ି ହୋଇଯାଏ ତେବେ କ'ଣ କରିବ ? ରାସ୍ତାରେ କଣ୍ଟା ପଡ଼ିଥିବ, ଆଉ ପାଖ ଦେଇ ହଜାର ହଜାର ଲୋକ ଗଲେ ତଥାପି କାହାରି ପାଦରେ ଫୋଡ଼ିହେଲା ନାହିଁ, କିନ୍ତୁ ଚନ୍ଦୁଭାଇ ବାହାରୁ ବାହାରୁ କଣ୍ଟା ତାଙ୍କ ପାଦରେ ଫୋଡ଼ି ହୋଇଗଲା । 'ବ୍ୟବସ୍ଥିତ ଶକ୍ତି' ତ' କିପରି ? ଯାହାଠାରେ କଣ୍ଟା ଫୋଡ଼ିହେବାର ଥିବ ତା'ଠାରେ ହିଁ ଫୋଡ଼ିହେବ । ସବୁ ସଂଯୋଗ ଏକାଠି କରିଦେବ, କିନ୍ତୁ ସେଥିରେ ନିମିତ୍ତ ର କ'ଣ ଦୋଷ ?

କେହି ପଚାରେ ମୁଁ ନିଜର ଭୁଲ କିପରି ଖୋଜିବି ? ତେବେ ମୁଁ ତା'କୁ ଶିଖାଏ ଯେ ତୋତେ କେଉଁଠି-କେଉଁଠି ସବୁ ଭୋଗିବାକୁ ପଡ଼େ ? ସେଇଠି ତୋର ଭୁଲ । ତୋର ଏପରି କ'ଣ ଭୁଲ ହୋଇଥିବ ଯେ ଏପରି ଭୋଗିବାକୁ ପଡ଼ିଲା ? ଏହାକୁ ଖୋଜି ବାହାର କର ।

## ମୂଳ ଭୁଲ୍ କେଉଁଠି ?

ଭୁଲ କାହାର ? ଯିଏ ଭୋଗେ ତା'ର ! ତା'ର କ'ଣ ଭୁଲ ? ତେବେ କହିବି ଯେ 'ମୁଁ ଚନ୍ଦୁଭାଇ ଅଟେ' ଏହି ମାନ୍ୟତା ହିଁ ତୁମର ଭୁଲ । କାରଣ ଏହି ଜଗତରେ କେହି ଦୋଷୀ ନୁହଁନ୍ତି । ଏଣୁ କେହି ଅପରାଧୀ ମଧ୍ୟ ନୁହଁନ୍ତି, ଏପରି ସିଦ୍ଧ ହୁଏ ।

ଦୁଃଖ ଦେଲାବାଲା ତ' କେବଳ ନିମିତ୍ତ ଅଟେ, କିନ୍ତୁ ମୂଳ ଭୁଲ ନିଜର ହିଁ ଅଟେ । ଯିଏ ଲାଭ କରାଏ, ସେ ମଧ୍ୟ ନିମିତ୍ତ ଏବଂ ଯିଏ କ୍ଷତି କରାଏ, ସେ ମଧ୍ୟ ନିମିତ୍ତ, କିନ୍ତୁ ତାହା ଆମର ହିଁ ହିସାବ, ଏଥିପାଇଁ ଏପରି ହୋଇଥାଏ ।



## ନିଜର ଦୋଷ ଦେଖିବାର ସାଧନ-ପ୍ରତିକ୍ରମଣ

### କ୍ରମଣ-ଅତିକ୍ରମଣ-ପ୍ରତିକ୍ରମଣ

ସଂସାରରେ ଯାହା କିଛି ମଧ୍ୟ ହେଉଅଛି ତାହା କ୍ରମଣ ଅଟେ । ଯେ ପର୍ଯ୍ୟନ୍ତ ତାହା ସହଜ ରୂପେ ହେଉଥାଏ ସେ ପର୍ଯ୍ୟନ୍ତ କ୍ରମଣ, କିନ୍ତୁ ଯଦି ଏକ୍ସେସ (ଅତ୍ୟଧିକ) ହୋଇଯାଏ, ତାହାକୁ ଅତିକ୍ରମଣ କୁହାଯାଏ । ଯାହା ପ୍ରତି ଅତିକ୍ରମଣ ହୋଇଯାଏ, ତା'ଠୁ ଯଦି ମୁକ୍ତି ଚାହୁଁଥାଅ ତେବେ ତାହାର ପ୍ରତିକ୍ରମଣ କରିବାକୁ ହିଁ ପଡ଼ିବ, ମାନେ ଧୋଇବାକୁ ପଡ଼ିବ, ତେବେ ଯାଇ ସଫା ହେବ । ପୂର୍ବ ଜନ୍ମରେ ଯେଉଁ ଭାବ କରିଥିଲେ ଯେ, 'ଅମୁକ ବ୍ୟକ୍ତିକୁ ଚାରି ଚଟକଣା ଦେବାର ଅଛି ।'ଏଣୁ ଯେତେବେଳେ ଏହି ଜନ୍ମରେ ତାହା ରୂପକରେ ଆସେ, ସେତେବେଳେ ଚାରି ଚଟକଣା ଲଗେଇ ଦିଆଯାଏ । ତାହାକୁ ଅତିକ୍ରମଣ ହେଲା କୁହାଯିବ, ଏଣୁ ତାହାର ପ୍ରତିକ୍ରମଣ କରିବାକୁ ପଡ଼ିବ । ସାମ୍‌ନାବାଲାର 'ଶୁଦ୍ଧାତ୍ମା'କୁ ସ୍ମରଣ କରି, ତାଙ୍କ ପାଖରେ ପ୍ରତିକ୍ରମଣ କରିବା ଉଚିତ୍ ।

କୌଣସି ଖରାପ ଆଚରଣ ହେଲା, ତାହାକୁ ଅତିକ୍ରମଣ କୁହାଯାଏ । ଯାହା ଖରାପ ବିଚାର ଆସିଲା, ତାହାକୁ ତ' ଦାଗ କୁହାଯାଏ । ପୁଣି ତାହା ମନେ ମନେ ଦଂଶନ କରୁଥାଏ । ତାହାକୁ ଧୋଇବା ପାଇଁ ପ୍ରତିକ୍ରମଣ କରିବାକୁ ପଡ଼ିବ । ଏହି ପ୍ରତିକ୍ରମଣ ଦ୍ୱାରା ତ' ସାମ୍‌ନାବାଲାର ମଧ୍ୟ ତୁମ ପ୍ରତି ଭାବ ବଦଳିଯାଏ, ନିଜର ଭାବ ଭଲ ଥିବ ତେବେ ଅନ୍ୟର ଭାବ ମଧ୍ୟ ଭଲ ହୋଇଯାଏ । କାରଣ ପ୍ରତିକ୍ରମଣରେ ଏତେ ଶକ୍ତି ଅଛି ଯେ ବାଘ ମଧ୍ୟ କୁକୁର ଭଳି ହୋଇଯାଏ ! ପ୍ରତିକ୍ରମଣ କେତେବେଳେ କାମରେ ଆସେ ? ଯେତେବେଳେ କୌଣସି ଓଲଟା ପରିଣାମ ଆସିଯାଏ, ସେତେବେଳେ କାମରେ ଆସେ ।

### ପ୍ରତିକ୍ରମଣର ଯଥାର୍ଥ ସମଝ

ତା'ହେଲେ ପ୍ରତିକ୍ରମଣ ମାନେ କ'ଣ ? ପ୍ରତିକ୍ରମଣ ମାନେ ସାମ୍‌ନାବାଲା ଆମକୁ ଯେଉଁ ଅପମାନ କରେ, ସେତେବେଳେ ଆମକୁ ବୁଝିନେବା ଉଚିତ୍ ଯେ ଏହି ଅପମାନ ପାଇଁ ଦାୟୀ କିଏ ? କରିବା ଲୋକ ଦୋଷୀ ନା ଭୋଗିବା ଲୋକ ଦୋଷୀ, ପ୍ରଥମେ ଆମକୁ ଏହି ନିଷ୍ପତ୍ତି ନେବା ଉଚିତ୍ । ଅପମାନ କରିବାବାଲା ଆଦୌ ଦୋଷୀ ନୁହେଁ । ସେ ନିମିତ୍ତ ଅଟେ ଏବଂ ନିଜର ହିଁ କର୍ମର ଉଦୟ ଅନୁସାରେ ସେ ନିମିତ୍ତ ମିଳେ । ଅର୍ଥାତ ଏହା ନିଜର ହିଁ ଦୋଷ । ଏବେ ପ୍ରତିକ୍ରମଣ ଏଥିପାଇଁ କରିବା ଉଚିତ୍ ଯେ

ସାମ୍ନାବାଲା ପ୍ରତି ଖରାପ ଭାବ ହେଲା । ତା' ପ୍ରତି ଅଯୋଗ୍ୟ ଅଟେ, ବଦ୍‌ମାସ ଅଟେ, ଏହିପରି ବିଚାର ମନରେ ଆସିଲେ ପ୍ରତିକ୍ରମଣ କରିବା ଉଚିତ୍ । ଯଦି କେହି ଗାଳି ଦେଉଛି ତେବେ ତାହା ନିଜର ହିଁ ହିସାବ ଅଟେ । ଏମାନେ ନିମିତ୍ତକୁ ହିଁ ଦୋଷ ଦିଅନ୍ତି ଏବଂ ସେଥିପାଇଁ ଏହିସବୁ ଝଗଡ଼ା ହୋଇଥାଏ ।

ଦିନସାରା ଯେଉଁ ବ୍ୟବହାର କରନ୍ତି ସେଥିରେ ଯେବେ କିଛି ଓଲଟା ହୋଇଯାଏ, ତେବେ ଆମକୁ ଜଣାପଡ଼େ ଯେ ଏହା ସହିତ ଓଲଟା ବ୍ୟବହାର ହୋଇଗଲା, ଜଣାପଡ଼େ କି ନାହିଁ ? ଆମେ ଯାହା ବ୍ୟବହାର କରୁ, ତାହା ସବୁ କ୍ରମଣ ଅଟେ । କ୍ରମଣ ଅର୍ଥାତ ବ୍ୟବହାର । ଏବେ ଯଦି କାହା ସହିତ ଓଲଟା ହୋଇଗଲା, ତେବେ ଆମକୁ ଏପରି ଜଣାପଡ଼େ ଯେ ତା' ପ୍ରତି କଠୋର ଶବ୍ଦ ବାହାରିଗଲା ଅବା ବ୍ୟବହାର ଓଲଟା ହୋଇଗଲା, ତାହା ଜଣା ପଡ଼େ ନା ନାହିଁ ? ତେବେ ତାହାକୁ ଅତିକ୍ରମଣ କୁହାଯାଏ ।

ଅତିକ୍ରମଣ ଅର୍ଥାତ ଆମେ ଓଲଟା ଗଲେ । ସେତିକି ହିଁ ଫେରି ଆସିବାର ନାମ ପ୍ରତିକ୍ରମଣ ।

## ପ୍ରତିକ୍ରମଣର ଯଥାର୍ଥ ବିଧି

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣରେ କ'ଣ କରିବାକୁ ପଡ଼େ ?

**ଦାଦାଶ୍ରୀ :** ମନ-ବଚନ-କାୟା, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମ, ଚନ୍ଦୁଲାଲ ତଥା ଚନ୍ଦୁଲାଲ ନାମର ସର୍ବ ମାୟାରୁ ଭିନ୍ନ, ଏପରି ତାଙ୍କର 'ଶୁଦ୍ଧାତ୍ମା'କୁ ମନେ ପକାଇ କହିବ ଯେ, " ହେ ଶୁଦ୍ଧାତ୍ମା ଭଗବାନ ! ମୁଁ ଦୁଃଖ ପହଞ୍ଚିଲା ଭଳି କହିଦେଲି, ତାହା ଭୁଲ ହୋଇଗଲା, ସେ ପାଇଁ କ୍ଷମା ମାଗୁଛି ଏବଂ ପୁଣି ଆଉ ସେହି ଭୁଲ କରିବି ନାହିଁ, ଏପରି 'ନିଶ୍ଚୟ' କରୁଛି, ପୁଣି କେବେ ମଧ୍ୟ ଏଭଳି ଭୁଲ ନ ହେଉ, ଏପରି ଶକ୍ତି ଦିଅନ୍ତୁ ।" 'ଶୁଦ୍ଧାତ୍ମା'କୁ ମନେପକାଇ ବା ଦାଦାଙ୍କୁ ମନେ ପକାଇ କହିଲେ ଯେ, 'ଏହି ଭୁଲ ହୋଇଯାଇଛି', ଏହା ଆଲୋଚନା ଅଟେ, ଆଉ ସେହି ଭୁଲକୁ ଧୋଇବା ଅର୍ଥାତ ପ୍ରତିକ୍ରମଣ ଏବଂ 'ଏପରି ଭୁଲ ଆଉ କେବେ ମଧ୍ୟ କରିବି ନାହିଁ' ଏପରି 'ନିଶ୍ଚୟ' କରିବାକୁ ପ୍ରତ୍ୟାଖ୍ୟାନ କୁହାଯାଏ । ଅନ୍ୟ ବ୍ୟକ୍ତିର କ୍ଷତି ହେଲା ପରି କରିବା ଅଥବା ଆମ ଦ୍ୱାରା ତା'କୁ ଦୁଃଖ ଦେବା, ସେ ସବୁ ଅତିକ୍ରମଣ ଅଟେ ଏବଂ ତାହାର ତୁରନ୍ତ ଆଲୋଚନା, ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ କରିବାକୁ ପଡ଼େ ।



# ପ୍ରତିକ୍ରମଣ ବିଧି

ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ଦେହଧାରୀ (ଯାହା ପ୍ରତି ଦୋଷ ହୋଇଛି, ସେହି ବ୍ୟକ୍ତିର ନାମ)ର ମନ-ବଚନ-କାୟା ଏବଂ ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମରୁ ଭିନ୍ନ ଏପରି ହେ ଶୁଦ୍ଧତ୍ମା ଭଗବାନ, ଆପଣଙ୍କ ସାକ୍ଷୀରେ ଆଜି ଦିନ ପର୍ଯ୍ୟନ୍ତ ମୋ ଦ୍ୱାରା ଯେଉଁ ଯେଉଁ **ଦୋଷ ହୋଇଛି, ସେସବୁ ପାଇଁ କ୍ଷମା ମାଗୁଛି । ହୃଦୟ ପୂର୍ବକ ବହୁତ ପଶ୍ଚାତାପ କରୁଛି । ମୋତେ କ୍ଷମା କରନ୍ତୁ । ଏବଂ ପୁଣି ଏଭଳି ଦୋଷ କେବେ ମଧ୍ୟ କରିବି ନାହିଁ ଏପରି ଦୃଢ଼ 'ନିଶ୍ଚୟ' କରୁଛି । ସେଥିପାଇଁ ମୋତେ ପରମ ଶକ୍ତି ଦିଅନ୍ତୁ ।

**କ୍ରୋଧ-ମାନ-ମାୟା-ଲୋଭ, ବିଷୟ-ବିକାର, କଷାୟ ଇତ୍ୟାଦି ଦ୍ୱାରା କାହାରିକୁ ମଧ୍ୟ ଦୁଃଖ ପହଞ୍ଚାଇ ଥିଲେ, ସେହି ଦୋଷକୁ ମନରେ ସ୍ମରଣ କର ।

ଏହିପରି ପ୍ରତିକ୍ରମଣ କଲେ ଜୀବନ ଭଲ ଭାବରେ ବିତିଥାଏ ଏବଂ ମୋକ୍ଷରେ ମଧ୍ୟ ଯାଇପାରିବା ! ଭଗବାନ କହିଛନ୍ତି ଯେ,'ଅତିକ୍ରମଣର ପ୍ରତିକ୍ରମଣ କଲେ ହିଁ ମୋକ୍ଷରେ ଯାଇପାରିବ ।'

# ତ୍ରିମନ୍ଦିର ନିର୍ମାଣର ପ୍ରୟୋଜନ

ଯେବେ ବି କେବେ ମୂଳପୁରୁଷ, ଯେପରି ଶ୍ରୀ ମହାବୀର ଭଗବାନ, ଶ୍ରୀକୃଷ୍ଣ ଭଗବାନ, ଶ୍ରୀରାମ ଭଗବାନ ସଶରୀରେ ଉପସ୍ଥିତ ଥା'ନ୍ତି, ସେତେବେଳେ ସେମାନେ ଲୋକମାନଙ୍କୁ ଧର୍ମ ସମ୍ବନ୍ଧୀୟ ମତମତାନ୍ତର ଗୁଡ଼ିକରୁ ବାହାରକୁ ବାହାର କରି ଆତ୍ମଧର୍ମରେ ସ୍ଥିର କରାନ୍ତି । କିନ୍ତୁ କାଳକ୍ରମେ ମୂଳପୁରୁଷମାନଙ୍କ ଅନୁପସ୍ଥିତିରେ ଧୀରେ-ଧୀରେ ଲୋକମାନଙ୍କ ମଧ୍ୟରେ ମତଭେଦ ହେବା ଦ୍ୱାରା, ଧର୍ମରେ ବିଭିନ୍ନ ସମ୍ପ୍ରଦାୟର ଉଦ୍ଭବ ହେବାର ପରିଣାମ ସ୍ୱରୂପ ସୁଖ ଓ ଶାନ୍ତି କ୍ରମଶଃ ଲୋପ ପାଇଯାଏ ।

ଅକ୍ରମ ବିଜ୍ଞାନୀ ପରମ ପୂଜନୀୟ ଶ୍ରୀଦାଦା ଭଗବାନ ଲୋକଙ୍କୁ ଆତ୍ମଧର୍ମ ପ୍ରାପ୍ତି କରାଇବା ସଙ୍ଗେ ସଙ୍ଗେ ଧର୍ମରେ ବ୍ୟାପ୍ତ 'ତୁ-ତୁ, ମେଁ-ମେଁ' ର ଝଗଡ଼ାକୁ ଦୂର କରିବା ପାଇଁ ଏବଂ ଲୋକମାନଙ୍କୁ ସଂକୀର୍ଣ୍ଣ ଧାର୍ମିକ ପକ୍ଷପାତର ଦୂରାଗ୍ରହର ବିପଦରୁ ପାରି କରାଇବା ପାଇଁ ଏକ ଅନନ୍ୟ, କ୍ରାନ୍ତିକାରୀ ପଦକ୍ଷେପ ଉଠାଇଲେ, ଯାହା ହେଉଛି ସମ୍ପୂର୍ଣ୍ଣ ନିଷ୍ପକ୍ଷପାତୀ ଧର୍ମ ଅନୁଷ୍ଠାନର ନିର୍ମାଣ ।

ମୋକ୍ଷ ଧ୍ୟେୟର ପୂର୍ଣ୍ଣାହୂତି ପାଇଁ ଶ୍ରୀମହାବୀର ସ୍ୱାମୀ ଭଗବାନ ଜଗତକୁ ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଦେଖାଇଥିଲେ । ଶ୍ରୀକୃଷ୍ଣ ଭଗବାନ ଗୀତାର ଉପଦେଶରେ ଅର୍ଜୁନଙ୍କୁ 'ଆତ୍ମବତ୍ ସର୍ବଭୂତେଷୁ'ର ଦୃଷ୍ଟି ପ୍ରଦାନ କରିଥିଲେ । ଜୀବ ଓ ଶିବର ଭେଦ ଅପସରିଗଲେ ଆମେ ନିଜେ ହିଁ ଶିବସ୍ୱରୂପ ହୋଇ ଚିଦାନନ୍ଦ ରୂପୋ ଶିବୋଽହମ୍ ଶିବୋଽହମ୍‌ର ସ୍ଥିତିକୁ ପ୍ରାପ୍ତ କରୁ । ଏହିପରି ସମସ୍ତ ଧର୍ମର ମୂଳପୁରୁଷମାନଙ୍କ ହୃଦୟର କଥା ଆତ୍ମଜ୍ଞାନ ପ୍ରାପ୍ତି ହିଁ ଥିଲା । ଏହି କଥା ବୁଝି ପାରିଲେ ତାହା ପାଇଁ ପୁରୁଷାର୍ଥର ପ୍ରାରମ୍ଭ ହୋଇଥାଏ ଏବଂ ପ୍ରତ୍ୟେକଙ୍କୁ ଆତ୍ମଦୃଷ୍ଟିରେ ଦେଖିବା ସଙ୍ଗେ ସଙ୍ଗେ ଅଭେଦତା ଉତ୍ପନ୍ନ ହେଇଥାଏ । କୌଣସି ଧର୍ମର ଖଣ୍ଡନ-ମଣ୍ଡନ ନହେଉ, କୌଣସି ଧର୍ମର ସିଦ୍ଧାନ୍ତକୁ ଆଘାତ ନ ପହଞ୍ଚୁ ଏପରି ଭାବନା ନିରନ୍ତର ରହିଥାଏ ।

ପରମ ପୂଜନୀୟ ଦାଦା ଭଗବାନ(ଦାଦାଶ୍ରୀ) କହୁଥିଲେ ଯେ ଜାଣତରେ-ଅଜାଣତରେ ଯଦି କାହାରି ବିରାଧନା ହୋଇଯାଇଥାଏ, ସେମାନଙ୍କ ଆରାଧନା ହେବା ଦ୍ୱାରା ସେ ସବୁ ବିରାଧନାଗୁଡ଼ିକ ଧୋଇ ହୋଇଯାଏ । ଏପରି ନିଷ୍ପକ୍ଷପାତୀ ତ୍ରିମନ୍ଦିର ପରିବେଶରେ ପ୍ରବେଶ କରି ସବୁ ଭଗବତ୍ ମୂର୍ତ୍ତିମାନଙ୍କ ସାମ୍ନାରେ ସହଜ ରୂପେ ମଥା ଯେବେ ନଇଁଯାଏ, ସେତେବେଳେ ଭିତରର ସବୁ ଦୁରାଗ୍ରହ, ଭେଦଭାବ ପୂର୍ଣ୍ଣ ସମସ୍ତ ମାନ୍ୟତା ନଷ୍ଟ ହେବାକୁ ଲାଗେ ଏବଂ ଆମେ ନିରାଗ୍ରହୀ ହେବାକୁ ଲାଗୁ ।

ଦାଦାଭଗବାନ ପରିବାରର ମୁଖ୍ୟ କେନ୍ଦ୍ର ତ୍ରିମନ୍ଦିର ଅଡ଼ାଲଜରେ ଅବସ୍ଥିତ । ଏତଦ୍‌ବ୍ୟତୀତ ଗୁଜରାଟର ଅହମଦାବାଦ, ରାଜକୋଟ, ମୋରବୀ, ଭୁଜ୍, ଗୋଧରା, ଭାଦରଣ, ଚଲାମଲୀ ଓ ବାସଣା(ଜିଲ୍ଲା-ବଡ଼ୋଦରା) ଆଦି ସ୍ଥାନରେ ନିଷ୍ପକ୍ଷପାତୀ ତ୍ରିମନ୍ଦିରର ନିର୍ମାଣ ହୋଇଛି । ମୁମ୍ବାଇ ଓ ସୁରେନ୍ଦ୍ର ନଗରରେ ତ୍ରିମନ୍ଦିର ନିର୍ମାଣ କାର୍ଯ୍ୟ ଚାଲିଛି ।

## ଜ୍ଞାନ ବିଧି କ'ଣ ?

- ଏହା ଭେଦଜ୍ଞାନର ପ୍ରୟୋଗ ଅଟେ, ଯାହା ପ୍ରଶ୍ନୋତ୍ତରୀ ସତ୍‌ସଙ୍ଗଠାରୁ ଭିନ୍ନ ଅଟେ ।
- ୧୯୫୮ରେ ପରମ ପୂଜ୍ୟ ଦାଦା ଭଗବାନଙ୍କୁ ଯେଉଁ ଆତ୍ମଜ୍ଞାନ ପ୍ରକଟ ହୋଇଥିଲା, ସେହି ଜ୍ଞାନ ଆଜି ମଧ୍ୟ ତାଙ୍କରି କୃପାରୁ ତଥା ପୂଜ୍ୟ ନୀରୁମାଙ୍କ ଆଶୀର୍ବାଦରୁ, ପୂଜ୍ୟ ଦୀପକଭାଇଙ୍କ ମାଧ୍ୟମରେ ପ୍ରାପ୍ତ ହେଉଛି ।

## ଜ୍ଞାନ କାହିଁକି ନେବା ଉଚିତ ?

- ଜନ୍ମ-ମରଣର ଚକ୍ରରୁ ମୁକ୍ତ ହେବା ପାଇଁ ।
- ସ୍ୱୟଂର ଆତ୍ମା ଜାଗୃତ କରିବା ପାଇଁ ।
- ପାରିବାରିକ ସମ୍ବନ୍ଧ ଓ କାମ-ଦାମରେ ସୁଖ-ଶାନ୍ତି ଅନୁଭବ କରିବା ପାଇଁ ।

## ଜ୍ଞାନବିଧି ଦ୍ୱାରା କ'ଣ ପ୍ରାପ୍ତ ହୁଏ ?

- ଆତ୍ମଜାଗୃତି ଉତ୍ପନ୍ନ ହୁଏ ।
- ସଠିକ୍ ସମଝ ଦ୍ୱାରା ଜୀବନ-ବ୍ୟବହାର ପୂର୍ଣ୍ଣ କରିବା ପାଇଁ ଚାବି ପ୍ରାପ୍ତ ହୁଏ ।
- ଅନନ୍ତ କାଳର ପାପ ଭସ୍ମୀଭୂତ ହୋଇଯାଏ ।
- ଅଜ୍ଞାନ ମାନ୍ୟତାଗୁଡ଼ିକ ଦୂର ହୁଏ ।
- ଜ୍ଞାନ ଜାଗୃତିରେ ରହିବା ଦ୍ୱାରା କର୍ମ ବନ୍ଧନ ହୁଏ ନାହିଁ ଏବଂ ପୁରୁଣା କର୍ମ ନିର୍ଜରା ହୁଏ ।

## ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଆସିବା ଆବଶ୍ୟକ ?

- ଆତ୍ମଜ୍ଞାନ ଜ୍ଞାନୀଙ୍କ କୃପା ଓ ଆଶୀର୍ବାଦର ଫଳ ଅଟେ । ଏହା ପାଇଁ ପ୍ରତ୍ୟକ୍ଷ ଆସିବା ଆବଶ୍ୟକ ଅଟେ ।
- ପୂଜ୍ୟ ନୀରୁମା ଓ ପୂଜ୍ୟ ଦୀପକ ଭାଇଙ୍କ ଟିଭି ଅବା ଭିସିଡ଼ି ସତ୍‌ସଙ୍ଗ କାର୍ଯ୍ୟକ୍ରମ ଓ ଦାଦାଜୀଙ୍କ ପୁସ୍ତକ ଗୁଡ଼ିକ ଜ୍ଞାନର ଭୂମିକା ପ୍ରସ୍ତୁତ କରାଇପାରେ, କିନ୍ତୁ ଆତ୍ମସାକ୍ଷାତ୍କାର କରାଇପାରେ ନାହିଁ ।
- ଅନ୍ୟ ସାଧନ ଦ୍ୱାରା ଶାନ୍ତି ଅବଶ୍ୟ ମିଳେ କିନ୍ତୁ ଯେପରି ପୁସ୍ତକରେ ଚିତ୍ରିତ ଦୀପ ପ୍ରକାଶ ଦେଇ ନ ପାରେ, ମାତ୍ର ପ୍ରତ୍ୟକ୍ଷ ପ୍ରଜ୍ଜ୍ୱଳିତ ଦୀପ ହିଁ ପ୍ରକାଶ ଦେଇଥାଏ । ସେହିପରି ଆତ୍ମା ଜାଗୃତ କରିବା ପାଇଁ ସ୍ୱୟଂ ଆସି ଜ୍ଞାନ ପ୍ରାପ୍ତ କରିବା ପାଇଁ ପଡ଼େ ।
- **ଜ୍ଞାନ ପ୍ରାପ୍ତି ପାଇଁ ଧର୍ମ ବା ଗୁରୁ ବଦଳାଇବାର ନାହିଁ ।**
- **ଜ୍ଞାନ ଅମୂଲ୍ୟ ଅଟେ, ଏଣୁ ତାହା ପ୍ରାପ୍ତ କରିବା ପାଇଁ କୌଣସି ମୂଲ୍ୟ ଦେବାକୁ ପଡ଼େ ନାହିଁ ।**

## दादा भगवान फाउन्डेशन के द्वारा प्रकाशित पुस्तकें

१. ज्ञानी पुरुष की पहचान
२. सर्व दु:खो से मुक्ति
३. कर्म का सिद्धांत
४. आत्मबोध
५. मैं कौन हूँ ?
६.वर्तमान तीर्थकंर श्री सीमंधर स्वामी
७.भुगते उसी की भूल
८. एडजस्ट एवरीव्हेयर
९. टकराव टालिए
१०. हुआ सो न्याय
११. चिंता
१२. क्रोध
१३. प्रतिक्रमण
१४. दादा भगवान कौन ?
१५. पैसों का व्यवहार
१६. अंत: करण का स्वरुप
१७. जगत कर्ता
१८. त्रिमंत्र
१९. भावना से सुधरे जन्मोंजन्म
२०. माता-पिता और बच्चों का व्यवहार
२१. प्रेम
२२. समझ से प्राप्त ब्रह्मचर्य
२३. दान
२४. मानव धर्म
२५. सेवा-परोपकार
२६. मृत्यु समय, पहले और पश्चात
२७. निजदोष दर्शन से...निर्दोष
२८. पति-पत्नि का दिव्य व्यवहार
२९. क्लेश रहित जीवन
३०. गुरु-शिष्य
३१. अहिंसा
३२. सत्य-असत्य के रहस्य
३३. चमत्कार
३४. पाप-पुण्य
३५. वाणी,व्यवहार में...
३६. कर्म का विज्ञान
३७. आप्तवाणी - १
३८. आप्तवाणी - २
३९. आप्तवाणी - ३
४०. आप्तवाणी - ४
४१. आप्तवाणी - ५
४२. आप्तवाणी - ६
४३. आप्तवाणी - ७
४४. आप्तवाणी - ८
४५. समझ से प्राप्त ब्रह्मचर्य (पूर्वार्ध-उत्तरार्ध)

• ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ୫୫ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ www.dadabhagwan.org ରେ ମଧ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।

• ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।

**ଓଡ଼ିଆ ପୁସ୍ତକ**: ୧) ଆତ୍ମସାକ୍ଷାତ୍କାର ୨) ଘର୍ଷଣ ଟାଳନ୍ତୁ ୩) ମୁଁ କିଏ ?
୪) ଏଡ଼ଜଷ୍ଟ ଏଭ୍ରିହ୍ୱେୟାର ୫) ଚିନ୍ତା ୬) କ୍ରୋଧ
୭) ମାନବ ଧର୍ମ

# ପ୍ରାପ୍ତିସ୍ଥାନ

## ଦାଦା ଭଗବାନ ପରିବାର


ଅଡାଲଜ : ତ୍ରିମନ୍ଦିର,ସୀମନ୍ଧର ସିଟୀ,ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧିନଗର,ଗୁଜରାଟ-୩୮୨୪୨୧,ଫୋନ-(୦୭୯)୩୯୮୩୦୧୦୦

ରାଜକୋଟ : ତ୍ରିମନ୍ଦିର,ଅହମଦାବାଦ-ରାଜକୋଟ ହାଇୱେ, ତରଘଡିୟା ଚୋକଡ଼ି (ସର୍କଲ), ପୋ-ମାଲିୟାସଣ,ଜିଲ୍ଲା-ରାଜକୋଟ,ଫୋନ-୯୨୭୪୧୧୧୩୯୩

ଭୁଜ୍ : ତ୍ରିମନ୍ଦିର, ହିଲ୍ ଗାର୍ଡେନର ପଛ,ଏୟାରପୋର୍ଟ ରୋଡ,(୦୨୮୩୨) ୨୯୦୧୨୩

ଗୋଧ୍ରା : ତ୍ରିମନ୍ଦିର,ଭାମେୟା ଗାଁ, ଏକ୍ସିଆଇ ଗୋଡାଉନ୍ ସାମନାରେ,ଗୋଧ୍ରା । (ଜି-ପଂଚମହାଲ) ଫୋନ-(୦୨୬୭୨) ୨୬୨୩୦୦

ମୋର୍‌ବୀ :ତ୍ରିମନ୍ଦିର, ମୋରବୀ-ନବଲଖି ହାଇୱେ,ପୋ :ଜୟପୁର,ଜିଲ୍ଲା-ରାଜକୋଟ , (୦୨୮୨୨)୨୯୭୦୯୭

ଅମ୍‌ରେଲି : ତ୍ରିମନ୍ଦିର,ଲିଲିୟା ରୋଡ,ବାଇପାସ ଚୋକଡି,ଖାରାବାଡି,୯୯୨୪୩୪୪୪୬୦

ସୁରେନ୍ଦ୍ରନଗର :ତ୍ରିମନ୍ଦିର,ସୁରେନ୍ଦ୍ରନଗର-ରାଜକୋଟ ହାଇୱେ,ଲୋକ ବିଦ୍ୟାଳୟ ପାଖ,ମୂଳି ରୋଡ,୯୮୭୯୨୩୨୮୭୭

ଅହମଦାବାଦ :ଦାଦା ଦର୍ଶନ,୫,ମମତାପାର୍କ ସୋସାଇଟୀ,ନବ ଗୁଜରାଟ କଲେଜ ପଛ,ଉସ୍ମାନପୁରା,ଅହମଦାବାଦ-୩୮୦୦୧୪,ଫୋନ-(୦୭୯)୨୭୫୪୦୪୦୮

ବଡୋଦରା : ଦାଦା ମନ୍ଦିର,୧୭,ମାମା କି ପୋଲ-ମୁହଲ୍ଲା,ରାବପୁରା ପୋଲିସ ଷ୍ଟେସନ ପାଖ,ସଲାଟ ୱାଡା,ବଡୋଦରା, ୯୯୨୪୩୪୩୩୩୫

ମୁମ୍ବାଇ: ୯୩୨୩୫୨୮୯୦୧ , ବାଙ୍ଗାଲୋର :୯୫୯୦୯୭୯୦୯୯, କୋଲକତା:୦୩୩-୩୨୯୩୩୮୮୫, ଜଲନ୍ଧର: ୯୮୧୪୦୬୩୦୪୩, ଜୟପୁର:୯୩୫୧୪୦୮୨୮୫, ହାଇଦ୍ରାବାଦ : ୯୯୮୯୮୭୭୭୮୬,ଇନ୍ଦୋର :୯୮୯୩୫୪୫୩୫୧ , ଅମରାବତୀ : ୯୪୨୨୯୧୫୦୬୪,ରାୟପୁର:୯୩୨୯୫୨୩୭୩୭ , ଭିଲାଇ: ୯୮୨୭୪୮୧୩୩୬ , ଦିଲ୍ଲୀ:୯୮୧୦୦୯୮୫୬୪,ଭୋପାଲ୍: ୯୪୨୫୦୨୪୪୦୫,ଚେନ୍ନାଇ:୯୩୮୦୧୫୯୯୫୭ ଓଡିଶା:୮୭୬୩୦୭୩୧୧୧

**www.dadabhagwan.org**

**Email : info@dadabhagwan.org**



# ଜ୍ଞାନବିଧି

ଜ୍ଞାନବିଧି, ଅନନ୍ତ ଜନ୍ମରୁ ନିଜର ସ୍ୱରୂପର, ଆତ୍ମ ସ୍ୱରୂପର ଅନୁଭୂତି ନିମନ୍ତେ ତୃଷାର୍ତ୍ତ ମୁମୁକ୍ଷୁମାନଙ୍କ ପାଇଁ ଜ୍ଞାନୀପୁରୁଷ ପରମପୂଜ୍ୟ ଦାଦାଭଗବାନଙ୍କ ଅକ୍ରମ ବିଜ୍ଞାନ ମାଧ୍ୟମରେ ଆତ୍ମସାକ୍ଷାତ୍କାର ପାଇଁ ଦିଆଯାଇଥିବା ଏକ ଅମୂଲ୍ୟ ଉପହାର । ଜ୍ଞାନବିଧି, 'ମୁଁ'(ଆତ୍ମା) ଏବଂ 'ମୋର'(ମନ-ବଚନ-କାୟା) ମଧ୍ୟରେ ଭେଦରେଖା ଟାଣିଥିବା, ଜ୍ଞାନୀପୁରୁଷଙ୍କ ବିଶେଷ ଆଧ୍ୟାତ୍ମିକ ସିଦ୍ଧି ଦ୍ୱାରା ହୋଇଥିବା ଅଦ୍ଭୁତ ପ୍ରୟୋଗ ଅଟେ । ଏହି ଆତ୍ମଜ୍ଞାନରୁ ଶାଶ୍ୱତ ଆନନ୍ଦର ପ୍ରାପ୍ତି ହୁଏ ଏବଂ ଚିନ୍ତାରୁ ମୁକ୍ତ ହୋଇଯାଇଛି । ସାଂସାରିକ ସମ୍ବନ୍ଧ ଶାନ୍ତିମୟ ହୋଇବାରେ ଏବଂ ବ୍ୟାବହାରିକ ସମସ୍ୟାର ସମାଧାନ ପ୍ରାପ୍ତ କରିବାରେ ସହାୟକ ସାବ୍ୟସ୍ତ ହୁଏ ।

–ଦାଦାଶ୍ରୀ



dadabhagwan.org

Printed in India

Price